ପ୍ରକାଶିତ ପୁସ୍ତକ :

ଗଳ୍ପ ସଂକଳନ

ଅପରାହ୍ନର ଅବଧାନ

ରୂପାନ୍ତରିତ ରୂପା

ଶିଶୁ କବିତା ସଂକଳନ :

ଅଜବ ସପନ

ଅଜାଙ୍କ ନାଟ

# ଆକାଶର ରଙ୍ଗ

(ଗଳ୍ପ ସଂକଳନ)

ଗୀତା ତ୍ରିପାଠୀ


ଅର୍ପିତା
ଭୁବନେଶ୍ୱର

# ଆକାଶର ରଙ୍ଗ

(ଗଳ୍ପ ସଂକଳନ)

ଲେଖିକା : ଗୀତା ତ୍ରିପାଠୀ, ସି-୨୪, କୋଏଲ ନଗର, ରାଉରକେଲା-୧୪
ପ୍ରକାଶକ : ସୁବାସ ଷଡ଼ଙ୍ଗୀ
ଅର୍ପିତା, ଏଫ୍-୧୧/୨, ୟୁନିଟ୍-୯, ଭୁବନେଶ୍ୱର-୨୨
ମୋବାଇଲ - ୯୪୩୭୪ ୧୫୪୪୨
ପ୍ରଚ୍ଛଦ : ବିଭୁ
ସ୍ୱତ୍ୱ : ଲେଖିକା
ମୁଦ୍ରଣ : ଦିବ୍ୟ ମୁଦ୍ରଣୀ, ସାମନ୍ତରାପୁର, ଭୁବନେଶ୍ୱର - ୨
ପ୍ରଥମ ସଂସ୍କରଣ : ବିଜୟା ଦଶମୀ, ୨୦୧୧
ମୂଲ୍ୟ : ୮୦ ଟଙ୍କା



# Akasara Ranga

Writer : **Geeta Tripathy,** C-24, Koel Nagar, Rourkela-14
Publisher : Subash Sarangi, Arpita, F-11/2, Unit-9
Bhubaneswar - 751 022
Mobile : 94374 15442
Cover : Bibhu
© : Writer
Printed at : Divya Mudrani, Samantarapur, Bhubaneswar - 2
First Edition : Vijaya Dasami, 2011
Price : ₹ 80.00

ନୀଳବର୍ଣ୍ଣ ଭଳି ପ୍ରତୀୟମାନ ହେଉଥିବା ଆକାଶର ରଂଗ ପ୍ରକୃତରେ ନୀଳ ନୁହେଁ । ବାୟୁମଣ୍ଡଳ ଅତିକ୍ରମ କଲାପରେ ଆକାଶର ନିଜସ୍ୱ ରଂଗ କଳା ବୋଲି ଜଣାପଡେ । ପ୍ରତ୍ୟେକ ମଣିଷ ଠିକ୍ ଆକାଶ ପରି । ସେମାନେ ବାହାରକୁ ପ୍ରଦର୍ଶିତ କରୁଥିବା ଉଦାରତା ସତ୍ୟ ନୁହେଁ । 'ଆକାଶର ରଂଗ' ଗଳ୍ପଟି ଏହି ତଥ୍ୟ ଉପରେ ଆଧାରିତ । ଯେଉଁ ଘଟଣାମାନ ମନକୁ ବ୍ୟଥିତ, ବିକ୍ଷତ, ବିଭୋର ଓ ବିସ୍ମିତ କରିଛି ସେଇ ଘଟଣାକୁ ନେଇ ଏଇ ସବୁ ଗଳ୍ପ ।

ବହିଟି ପ୍ରକାଶ କରିବାରେ ମତେ ଉତ୍ସାହିତ ଓ ସାହାଯ୍ୟ କରିଥିବା ବିଶିଷ୍ଟ ସାହିତ୍ୟିକ ଭୂପେନ୍ ମହାପାତ୍ର ଓ 'ଅର୍ପିତା'ର ସମ୍ପାଦକ ସୁବାସ ଷଡଙ୍ଗୀଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

- ଗୀତା ତ୍ରିପାଠୀ

# ସୂଚୀପତ୍ର

# ଆକାଶର ରଙ୍ଗ

'ବାଳିକାବଧୂ' ସିରିଆଲ୍ ସରିବାମାତ୍ରେ ଶାଶୁ ପ୍ରୀତିକୁ ରାତ୍ରିଭୋଜନ ପାଇଁ ବଢ଼ାବଢ଼ି କରିବାକୁ କହିଲେ ।

ପ୍ରୀତି ରୋଷେଇ ଘରକୁ ଆସି ରୁଟି, ପୋଟଳ ଭଜା ଓ ମାଛ ତରକାରି ଥିବା ହଟ୍‌କେସ୍‌ଗୁଡ଼ିକ ଡାଇନିଂ ଟେବୁଲ୍ ଉପରେ ରଖି ପ୍ଲେଟ୍ ସଜାଡି ଭାବିଲା - ଆଜି ସିଏ ନିଜ ସହକର୍ମୀ ଅଧ୍ୟାପିକା ସଂଯୁକ୍ତାଠାରୁ ଶିଖିଥିବା ନଡିଆ ରସ ଦେଇ ଚିଙ୍ଗୁଡି ତରକାରି ରାନ୍ଧିଛି । କେଜାଣି ଘରର ସବୁ ସଦସ୍ୟଙ୍କୁ ସୁଆଦିଆ ଲାଗିବ କି ନାହିଁ ବିଶେଷ କରି ପୋଲିସ ଚାକିରିରୁ ଅବସର ନେଇଥିବା ଶ୍ୱଶୁରଙ୍କୁ ।

ପ୍ରତ୍ୟେକ ଦିନ ଖାଇବା ସମୟରେ ଅନ୍ୟ କେହି ନହେଲେ ବି ଶ୍ୱଶୁର ରନ୍ଧା ହୋଇଥିବା ବ୍ୟଞ୍ଜନ ଉପରେ ନିଜର ମତ ବ୍ୟକ୍ତ କରନ୍ତି ।

କେବେ ପ୍ରଶଂସା କରି କୁହନ୍ତି - ଆଜି ତରକାରିଟା ଭାରି ବାଗରେ ହୋଇଛି । ହୋଟେଲ୍ ତରକାରୀରେ କାହୁଁ ଏ ସ୍ୱାଦ ମିଳିବ ? ଲୋକେ ସେଠାକୁ ଯାଇ ଟଙ୍କାଗୁଡ଼ା ଯାହା ଶ୍ରାଦ୍ଧ କରନ୍ତି !

ପୁଣି କେବେ ଅସନ୍ତୁଷ୍ଟ ହୋଇ କୁହନ୍ତି - ଆଜି ତେଲ ନ ତାତୁଣୁ ତରବରିଆ ହୋଇ ପରିବା ପକାଇଦେଲ । ଭଜାରୁ କଂଚା ସୋରିଷ ତେଲର ଗନ୍ଧ ଆସୁଛି ।

- ଆଜିକାଲି ସାରଦିଆ ପରିବା ସାଙ୍ଗକୁ ଗ୍ୟାସ ଓ ପ୍ରେସରରେ ରନ୍ଧା ତରକାରିର କୌଣସି ସ୍ୱାଦ ରହୁନି । ପିଲାଦିନେ ଗୋଟେ ବାଇଗଣ ପୋଡ଼ାରେ ଠୋପେ ସୋରିଷ ତେଲ ପକାଇ କଂସେ ପଖାଳ ଖାଇ ସ୍କୁଲ୍ ଯାଉଥିଲି । ସେ ପୋଡା ବାଇଗଣ କି ମିଠା ! ତା ବାସ୍ନାରେ ଘରମହକି ଯାଉଥିଲା ।

ଶାଶୁ ଓ ପ୍ରୀତିକୁ ଉପଦେଶ ଦେବା ଛଳରେ କୁହନ୍ତି - ତୁମେମାନେ ପରିବା ତରକାରି ରାନ୍ଧିଲା ବେଳେ ଟିପେ ଚିନି ପକାଇ ଦିଅ, ପରିବାର ଖାରିଆ ଅଂଶଟା କଟିଯାଇ ମିଠାଳିଆ ଲାଗିବ।

ରନ୍ଧା ହେଇଥିବା ବ୍ୟଞ୍ଜନ ଉପରେ ମତବ୍ୟକ୍ତ କଲା ପରେ ଶ୍ୱଶୁର ପ୍ରସଙ୍ଗ ବଦଳାଇ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରନ୍ତି। ସୋନିଆଠାରୁ ସାନିଆ ଯାଏ ତ କେବେ ପରିବା ଦରଠାରୁ ପରିବେଶ ସୁରକ୍ଷାଯାଏ। ଆଉ କେବେ ଧର୍ମରୁ ଧନଧାନ୍ୟ ଯାଏ।

ଶ୍ୱଶୁର କୌଣସି ବିଷୟରେ କିଛି କହିଲା ବେଳେ ଅନ୍ୟମାନେ ଶ୍ରେଣୀର ବାଧ୍ୟ ଛାତ୍ର ଭଳି ମୁଣ୍ଡ ଟୁଙ୍ଗାରନ୍ତି। କଦବା କ୍ୱଚିତ୍ ଡାକ୍ତର ପୁଅ ଅନୁରାଗ, ପ୍ରୀତି ଓ ଶାଶୁ ନିଜର ମତ ପ୍ରକାଶ କରନ୍ତି। କିନ୍ତୁ ସପ୍ତମରେ ପଢୁଥିବା ନାତୁଣୀ ପୂଜା ଓ ପଂଚମରେ ପଢୁଥିବା ନାତି ପିଙ୍କୁ ଶତପ୍ରତିଶତ ଶ୍ରୋତା ପାଲଟନ୍ତି।

ପ୍ରୀତି ସମସ୍ତଙ୍କୁ ଖାଇବା ପାଇଁ ଡାକିଦେଇ ପ୍ଲେଟ୍‌ରେ ରୁଟି ଓ ପୋଟଳ ଭଜା ରଖି ଭାବିଲା - ଆଜି ଖାଇବାବେଳେ ଚିଙ୍ଗୁଡି ତରକାରି ଉପରେ ଖୁବ୍ ଜୋରସୋରରେ ଆଲୋଚନା ହେବ। ଆଜିର ଚିଙ୍ଗୁଡ଼ି ଝୋଳ ଜାତୀୟ ଓ ଆନ୍ତର୍ଜାତିକ ବିଷୟକୁ ଜମା ଧସେଇ ପଶିବାକୁ ଦେବ ନାହିଁ।

ପରିବାରର ସବୁ ସଦସ୍ୟ ନିଜ ନିଜ ଚୌକିରେ ବସିଲା ପରେ ନିଜର ଅଭ୍ୟାସ ଅନୁଯାୟୀ ଅନୁରାଗ ଶାଶୁଙ୍କୁ ପଚାରିଲେ - ବୋଉ, ଆଜି କି ତରକାରି ହେଇଛି ?

ଶାଶୁ ମାଛ ତରକାରି ଥିବା ହଟ୍‌କେଶ୍‌ର ଢ଼ାଙ୍କୁଣୀ ଖୋଲି କହିଲେ - ଆସନ୍ତାକାଲି ରଥଯାତ୍ରା ଥିବାରୁ ଆଜି ଫ୍ରିଜ୍‌ରେ ଥିବା ସବୁ ଭଜା ଚିଙ୍ଗୁଡି ତରକାରି କରାଗଲା। କାଲି ଆଇଁଷବାର ଥିଲେ ବି ରଥଯାତ୍ରା ପାଇଁ ଆଇଁଷ ରନ୍ଧା ହେବ ନାହିଁ।

ପ୍ରୀତି ଦେଖିଲା ସମସ୍ତେ ସତୃଷ୍ଣ ନୟନରେ ବଢ଼ା ହେଉଥିବା ମାଛ ତରକାରୀ ଆଡେ ଚାହିଁ ରହିଛନ୍ତି।

ରଥଯାତ୍ରା କଥା ପଡିବା ମାତ୍ରେ ପୂଜା ଶାଶୁଙ୍କୁ କହିଲା - ଜେଜେମା ଜାଣିଛ - କଲିକତାରୁ ଗୋଟେ ଝିଅ ଆମ କ୍ଲାସ୍‌କୁ ନୂଆ ହେଇ ଆସିଛି ଯେ ସିଏ କହୁଥିଲା - ତାଙ୍କ ଦୁର୍ଗାଙ୍କର ଦଶହାତ ଥିବାରୁ ସିଏ ସବୁକିଛି କରିପାରନ୍ତି, ଆଉ ଆମ ଜଗନ୍ନାଥଙ୍କର ହାତ ପାଦ ନଥିବାରୁ ସିଏ କୁଆଡେ ନିକମ୍ମା - କିଛି ବି କରିପାରନ୍ତିନି। ଶାଶୁ ସମସ୍ତଙ୍କ ଥାଳିରେ ମାଛ ଦେଇସାରି ନିଜ ପାଇଁ ବାଢୁଥିବା ବେଳେ ନାତୁଣୀର ଦେହଜଳା କଥା ଶୁଣି କ୍ରୋଧକୁ ନିୟନ୍ତ୍ରଣ କରି ନପାରି ଉତ୍ତ୍ୟକ୍ତ ହୋଇ କହିଲେ - ଏଁ, ତୋ ସାଙ୍ଗର ଏଡେ ବଡେଇ ? ଓଡ଼ିଶାକୁ ଆସି ଆମ ଆରାଧ୍ୟ ଦେବତାଙ୍କ ନାମରେ ସିଏ ଏମିତି କଥା କହୁଚି ?

ଲୋଭନୀୟ ମାଛ ତରକାରିରେ ସ୍ୱାଦ ନେବା ପାଇଁ ଉଲ୍ଲସିତ ହେଉ ପଡୁଥିବା ଶ୍ୱଶୁର, ଶାଶୁ, ଅନୁରାଗ ଓ ପ୍ରୀତିର ମୁହଁ ସବୁ ପୂଜାର କଥା ଶୁଣି ଅପମାନ ଓ କ୍ଷୋଭରେ କଳା ପଡିଯାଇଥିଲା।

ସମସ୍ତେ ଖାଇବା ଆରମ୍ଭ କରି ଦେଇଥିଲେ ବି ସତେ ଯେମିତି ତରକାରିର ସ୍ୱାଦ ସେମାନେ ଗ୍ରହଣ କରି ପାରୁ ନଥିଲେ।

ପୂଜା କିନ୍ତୁ ସାଙ୍ଗ କହିଥିବା କଥା କହିଦେଇ ମହା ଆନନ୍ଦରେ ଆଙ୍ଗୁଠି ଚାଟି ଖାଇବାରେ ଲାଗିଲା ଓ ପିଙ୍କୁ ଖାଉ ଖାଉ ମୁଣ୍ଡ ଟେକି ସମସ୍ତଙ୍କର ଗମ୍ଭୀର ମୁହଁକୁ ବାରମ୍ବାର ଚାହୁଁଥିଲା।

କିଛି ସମୟ ପାଇଁ ସମସ୍ତେ ଚୁପ୍‌ଚାପ ଖାଇବା ପରେ ଖାଦ୍ୟ ଢ଼ୋକି ସାରି ଅନୁରାଗ ଝିଅ ଆଡେ ଅନାଇ କହିଲେ - ଗୋଡ ନଥାଇ ବି ଆମ ପ୍ରଭୁ ଜଗନ୍ନାଥ ବର୍ଷକୁ ଥରେ ଦର୍ଶନ ପାଇ ପାରୁନଥିବା ଭକ୍ତମାନଙ୍କୁ ଦର୍ଶନ ଦେବା ପାଇଁ ଶ୍ରୀମନ୍ଦିରରୁ ବାହାରି ଗୁଣ୍ଡିଚା ମନ୍ଦିର ଯାଇଥାଆନ୍ତି। କିନ୍ତୁ ତାଙ୍କ ଦୁର୍ଗାଙ୍କର ଗୋଡ ଥାଇ ବି ପାଦେ ଆଗକୁ ବଢ଼ିପାରନ୍ତିନି।

ଅନୁରାଗ ଏତିକି କହି ଦେଇ ଗଡ ଜିତିଲା ଭଳି ବାପା, ମା ଓ ସ୍ତ୍ରୀଙ୍କୁ ଅନାଇଲେ।

ଅନୁରାଗର ମୁହଁରୁ କଥା ନସରୁଣୁ ଶାଶୁ ଖାଇବା ବନ୍ଦ କରି ନାତୁଣୀକୁ କହିଲେ - କାଲି ଯାଇକି ସେ ବଙ୍ଗାଳୀ ଟୋକୀକୁ କହିବୁ - ହାତ ନଥାଇବି ଆମ କାଳିଆ ଠାକୁର ଦାସିଆ ବାଉରୀ ହାତରୁ ନଡିଆ ନେଇଥିଲେ।

ଆଉ ଗୋଡ ନଥାଇ ସିଏ ପୁରୁଷୋତ୍ତମ ଦେବଙ୍କ ପାଇଁ ବଡଭାଇଙ୍କ ସାଙ୍ଗରେ କାଞ୍ଚି ଯାଇ ଲଢ଼ି ରାଜାଙ୍କୁ ବିଜୟଲାଭ କରାଇଥିଲେ। ତୋ ସାଂଗକୁ ପଚାରିବୁ ତ ତାଙ୍କ ଦଶଭୂଜା ଦୁର୍ଗା କେବେ କୌଣସି ଭକ୍ତ ହାତରୁ ସ୍ନେହରେ ନଡିଆ ଗ୍ରହଣ କରିଛନ୍ତି କିମ୍ବା ଭକ୍ତର ସମ୍ମାନ ରକ୍ଷା କରିବା ପାଇଁ ଯୁଦ୍ଧ କରିଛନ୍ତି ?

ମା କଥାଶୁଣି ଅନୁରାଗ ପୂଜାକୁ କହିଲେ - ତୋର ସବୁ ପଏଣ୍ଟ ମନେ ରହିଲା ତ ? କାଲି ଯାଇ ତୋ ସାଙ୍ଗକୁ କହିଦେବୁ।

ପାପା କାଲି ତ ସ୍କୁଲ ଛୁଟି ଅଛି - ମୁଁ ପଅର ଦିନ ସ୍କୁଲ ଯାଉ ଯାଉ ତାକୁ କହିଦେବି। ପୂଜା କହିଲା।

ପାଠ ଘୋଷି ମନେରଖିଲା ପରି ପୂଜା ମୁଠା କରିଥିବା ବାମ ହାତର କନିଷ୍ଠ ଅନାମିକା ଓ ମଧ୍ୟମା ଆଙ୍ଗୁଠି କ୍ରମାନ୍ୱୟରେ ଉଠାଇ କହିଲା ମୁଁ ରଥଯାତ୍ରା, ଦାସିଆ ବାଉରୀ ଓ କାଂଚି ବିଜୟ କଥା କହିବି।

ସେତିକିରେ ସନ୍ତୁଷ୍ଟ ନ ହେଇ ପୋଟଳ ଭଜା ଖଣ୍ଡେ ପାଟିରେ ପୁରାଇ ପ୍ରୀତି କହିଲା - ହଁ ଆହୁରି କହିଦେବୁ ଆମ ଜଗନ୍ନାଥଙ୍କର ହାତ ନାହିଁ ଭଲ ହେଇଛି। ତାଙ୍କ

ଦୁର୍ଗାତ କେବଳ ଶଙ୍ଖକୁ ଛାଡିଦେଲେ ବାକି ନଅ ହାତରେ ମାରଣାସ୍ତ୍ର ଗୁଡେ ଧରିଛନ୍ତି ।

ପ୍ରୀତିଙ୍କ କଥା ଶୁଣି ଶାଶୁ ଓ ଅନୁରାଗଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା ।

ଶେଷରେ ସଭାପତି ପରି ଶ୍ୱଶୁର ଗଳା ସଫାକରି ଗୁରୁ ଗମ୍ଭୀର ସ୍ୱରରେ କହିଲେ - ଏତିକିଟିଏ ପିଲା ହେଇ ସିଏ କ'ଣ ଏତେ ବଡ ବଡ କଥା କହୁଚି ? ଗୋଡଥିବା ତାଙ୍କ ଦୁର୍ଗା ଏବେଯାଏ ପଶ୍ଚିମ ବଂଗରୁ କେବଳ ଓଡ଼ିଶାକୁ ଆସିଛନ୍ତି । କାହିଁକି ନା ପଶ୍ଚମ ବଙ୍ଗ ଓ ଓଡ଼ିଶାକୁ ଛାଡିଦେଲେ ଅନ୍ୟ କେଉଁଠି ଦୁର୍ଗାପୂଜା ପାଳନ ହେବା କଥା ଅନ୍ତତଃ ମୁଁ ଜାଣିନି ।

ଲମ୍ବା ନିଃଶ୍ୱାସଟେ ନେଇଯାଇ ପୁଣି କହିଲେ ଜଗନ୍ନାଥ ଭାରତର ଦିଲ୍ଲୀ, ମାଡ୍ରାସ୍‌ଠାରୁ ଆରମ୍ଭ କରି ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋ, ବର୍କଲେ ଯାଏ ବିସ୍ତାରିତ । ଗତ ମାର୍ଚ୍ଚ ଛ' ତାରିଖରେ ଉତ୍ତର କାଲିଫର୍ଣ୍ଣିଆର ବେ ଏରିଆର ଫ୍ରିମୋଣ୍ଟ ସହରରେ ଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି ପରା ସ୍ଥାପନ କରାଯାଇଛି ।

ଶ୍ୱଶୁରଙ୍କ ବକ୍ତବ୍ୟ ଶୁଣି ଅନୁରାଗ, ପ୍ରୀତି ଓ ଶାଶୁ ଚମତ୍କୃତ ହେଇ ଅପଲକ ନୟନରେ କିଛିକ୍ଷଣ ତାଙ୍କ ଆଡେ ଚାହିଁଲା ପରେ ରାଜ ଦରବାରରେ ଥିବା ନବ୍ରତ୍ନମାନଙ୍କ ଭଳି ଏକା ସାଙ୍ଗରେ ମୁଣ୍ଡ ଟୁଙ୍ଗାରିଥିଲେ ।

ପୂରା ପରିବାର ମିଶି ଦୁର୍ଗାଙ୍କ ବିରୁଦ୍ଧରେ ଏତେଗୁଡିଏ ସୂଚୀପତ୍ର ପ୍ରସ୍ତୁତ କଲାପରେ ଅନୁରାଗ ପାଖରେ ବସି ଖାଉଥିବା ପିଙ୍କୁ ଆଡେ ଝୁଙ୍କିପଡି କହିଲେ - ତୁ ବି ଜଗନ୍ନାଥଙ୍କ ସପକ୍ଷରେ କିମ୍ବା ଦୁର୍ଗାଙ୍କ ବିପକ୍ଷରେ କିଛି ଗୋଟେ କହ ।

ଅବଜ୍ଞା କଲା ଭଳି ଶାଶୁ କହିଲେ - ସିଏ ଛୋଟ ପିଲାଟେ କ'ଣ ଜାଣିଛି ଯେ କହିବ ?

ତୁ ଜାଣିନୁ ବୋଉ କେବେ କେବେ ପିଲାମାନେ ଗୂଢ଼ତଥ୍ୟ କହିଥାଆନ୍ତି । ବାମ ହାତରେ ପିଙ୍କୁର ପିଠି ଆପୁଡାଇ ଅନୁରାଗ କହିଲେ - ତୁ ଜେଜେମା କଥା ଶୁଣନା । ତୋ ମନକୁ ଯାହା ଆସୁଛି କହ -

ଗୁଟିଖିଆ ବନ୍ଦ କରି ସମସ୍ତଙ୍କ ମୁହଁକୁ ଥରେ ଚାହିଁଦେଇ ମୁରୁକି ହସି ପିଙ୍କୁ କହିଲା - ମତେ ତ ତୁମେମାନେ ନାନୀର ସାଙ୍ଗଠୁ କିଛି ଅଲଗା ଲାଗୁନ ।

କେମିତି ? କେମିତି ? ? ପ୍ରୀତି ଜିଜ୍ଞାସା କଲା ।

କାଲି ଖାଇଲାବେଳେ ତୁମେମାନେ ପରା କଥା ହେଇଥିଲ ଏ ସଂସାରର ସୃଷ୍ଟିକର୍ତ୍ତା ଓ ପାଳନକର୍ତ୍ତା ଜଣେ । ଲୋକଙ୍କ ମୂର୍ଖତା ପାଇଁ କୃଷ୍ଣ, କ୍ରାଏଷ୍ଟ ଓ ଆଲ୍ଲାଙ୍କୁ ନେଇ କନ୍ଧମାଳ ଓ ଗୁଜୁରାଟରେ ଅକାରଣରେ ଦଙ୍ଗା ହେଲା । ଆଉ ଆଜି ତୁମେମାନେ କେମିତି ଆମ ଜଗନ୍ନାଥ ଓ ତାଙ୍କ ଦୁର୍ଗା କହୁଛ ?

ପୁଅର କଥାଶୁଣି ପ୍ରୀତିର ହୃଦୟର ସ୍ପନ୍ଦନ କିଛି ମୁହୂର୍ତ୍ତ ପାଇଁ ବନ୍ଦ ହୋଇଗଲା ଭଳି ଲାଗିଲା ଓ ଦୁଇ ଆଖିରେ ଲୁହ ଟଳମଳ ହେଲା।

ସମସ୍ତଙ୍କ ଦୃଷ୍ଟିକୁ ଏଡାଇ ଦେଇ ଲୁଗା କାନିରେ ଲୁହକୁ ଛପେଇ ଦେଇ ଅନ୍ୟମାନଙ୍କୁ ଚାହିଁ ଦେଖିଲା - ସମସ୍ତେ ବାକ୍‌ଶକ୍ତି ହରାଇଦେଲା ଭଳି ଚୁପ୍‌ଚାପ୍ ମୁହଁ ପୋତି ଖାଇବାରେ ଲାଗିଛନ୍ତି।

ଏତେବେଳଯାଏ ମୁଖରିତ ହେଉଥିବା ଖାଇବା ସ୍ଥାନ ଅଚାନକ ନିସ୍ତବ୍ଧ ହୋଇଗଲା। କେବଳ ଖାଦ୍ୟ ଚୋବାଇବା ଶବ୍ଦ ବ୍ୟତୀତ ଅନ୍ୟ କିଛି ଶୁଭୁନଥିଲା।

ମାଛ ତରକାରୀ ଉପରେ ନିଜର ମତାମତ ଦେବାକୁ ଭୁଲିଯାଇଥିବା ଶ୍ୱଶୁର ହଠାତ୍ ସଶବ୍ଦ ଝୋଳ ହାପୁଡି ଆଜି ତରକାରିଟା ଭାରି ବଢ଼ିଆ ହୋଇଛି କହି ଶାଶୁଙ୍କୁ ନିର୍ଦ୍ଦେଶ ଦେଲେ - ଦେ ପିଙ୍କୁକୁ ଆଉ ଦି'ଟା ଚିଙ୍ଗୁଡି ଦେ।

# ଚାଳିଶିଆ

ସକାଳ ସାଢ଼େ ଦଶଟାରେ ରାଉଣ୍ଡ ସରିଲାପରେ ବିଭାଗର ଡାକ୍ତରମାନେ ବେସିନ୍ ପାଖକୁ ଯାଇ ଲାଇଫ୍‌ବୟ ସାବୁନରେ ହାତ ଧୋଇ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ବଖରାକୁ ଆସି ନିଜନିଜର ଚୌକିରେ ବସି ଧୂମାୟିତ କଫିର ଅପେକ୍ଷାରେ ରହିଲେ।

ପ୍ରତିଦିନ ଏଇ ସମୟରେ ଇନ୍‌ଚାର୍ଯ୍ୟ ସିଷ୍ଟର ୱାର୍ଡବୟ୍ ହାତରେ ଫ୍ଲାସ୍କରେ କଫି ମଗାଇ ଡିସ୍‌ପୋଜ୍‌ବଲ୍ ଗ୍ଲାସରେ ଡାକ୍ତରମାନଙ୍କୁ କଫି ପରିବେଷଣ କରିଥାଆନ୍ତି। ସେଥିପାଇଁ ସେମାନଙ୍କୁ ପ୍ରତି ମାସରେ କିଛି ଟଙ୍କା ଦେବାକୁ ପଡ଼ିଥାଏ।

ମୁଁ ୱାର୍ଡରୁ ଛୁଟିକରାହେଉଥିବା ରୋଗୀମାନଙ୍କ ଇନ୍‌ଡୋର୍ ଫାଇଲ୍ ଧରି ବରିଷ୍ଠ ଡାକ୍ତରମାନଙ୍କଠାରୁ ଅନତିଦୂରରେ ବସି ଛୁଟି କାଗଜ ଲେଖିବା ଆରମ୍ଭ କଲି।

ସମସ୍ତଙ୍କ ପ୍ରଶ୍ନ କଲାଭଳି ଡକ୍ଟର କର ପଚାରିଲେ - "ଆଜି ଡକ୍ଟର ପଦ୍ମା କାହିଁକି ଅନୁପସ୍ଥିତ ରହିଲା ?"

- "ବୋଧହୁଏ ଭାଇରାଲ୍ ଫିଭର ହେଇଥିବ। ଏବେ ତ ବହୁତ ଭାଇରାଲ୍ ହେଉଛି।" ଡକ୍ଟର ଧଳ ଅନ୍ଦାଜ ଲଗାଇ କହିଲେ।

- "ସମ୍ଭବତ ତା' ସ୍କୁଟିଟା ଟ୍ରବଲ ଦେଇଥିବ।" ଭାବିଚିନ୍ତି ଡକ୍ଟର ଦାସ କହିଲେ,

ମୁଁ ତିନି ଡାକ୍ତରଙ୍କ ମୁଖମଣ୍ଡଳ ଅନୁଧ୍ୟାନ କରିବାକୁ ମୁଣ୍ଡ ଟେକି ଚାହିଁଲାବେଳେ ଡକ୍ଟର କର ମତେ ପଚାରିଲେ, "ଡକ୍ଟର ବୈଭବ, ତୁମେ ପଦ୍ମାର ମୋବାଇଲ୍ ନମ୍ବର ଜାଣିଛ କି ?"

"ନାଇଁ ସାର୍, ମୁଁ ଜାଣିନି" କହି ମୁଣ୍ଡନୋଇଁ ଲେଖାରେ ମନ ଦେଲି।

କଫି ଗ୍ଲାସ ସବୁ ଟ୍ରେରେ ଧରି ମୁଖ୍ୟ ସିଷ୍ଟର ରୁମ୍ ଭିତରକୁ ପଶି ସମସ୍ତଙ୍କୁ କଫି ଦେଲାପରେ ନିଜ ଆପ୍ରୋନ୍ ପକେଟରୁ ଚାରି ଚଉତା ଧଳା କାଗଜ ଖଣ୍ଡେ କାଢ଼ି ଡକ୍ଟର

କରଙ୍କ ହାତକୁ ବଢ଼ାଇଦେଇ କହିଲେ - "ସାର୍, ଡକ୍ଟର ପଦ୍ମାଙ୍କର ଏଇ ଦରଖାସ୍ତଟି ଆପଣଙ୍କୁ ଦେଇଦେବାପାଇଁ ତାଙ୍କ ପଡ଼ୋଶୀ ଏବେ ମତେ ଦେଇକି ଗଲେ।"

ସିଷ୍ଟର ଖାଲି ଟ୍ରେଟି ଧରି କବାଟ ଆଉଜାଇ ୱାର୍ଡକୁ ଚାଲିଗଲେ।

ଡକ୍ଟର କର ପ୍ରତୀକ୍ଷିତ କଫିକୁ ଉପେକ୍ଷା କରି ତରତରରେ ଚଉତା ଦରଖାସ୍ତଟିକୁ ଖୋଲି ଉତ୍କଣ୍ଠାର ସହିତ ପଢ଼ିବାରେ ଲାଗିଲେ। ଅନ୍ୟମାନେ ମଧ୍ୟ ନିଜ ସ୍ଥାନରୁ ଉଠି ଡକ୍ଟର କରଙ୍କ ପଛପଟେ ଅଣେଇ ଠିଆହେଇ ଦରଖାସ୍ତ ପଢ଼ିଲେ।

ଦରଖାସ୍ତଟି ଆମୂଳଚୂଳ ପଢ଼ିସାରିଲା ପରେ ଡକ୍ଟର କର କହିଲେ - "ହଠାତ୍ ଏତେଗୁଡ଼ାଏ ଦିନ କାହିଁକି ଛୁଟି ନେଲା? ଦରଖାସ୍ତରେ ତ କାରଣ ବିଷୟରେ କିଛି ଲେଖିନି। ଖାଲି ଅର୍ଜେଣ୍ଟ ୱାର୍କ ବୋଲି ଲେଖିଛି।

- ସିଷ୍ଟରଙ୍କୁ ଡାକି ପଚାରିଲେ ଜଣାପଡ଼ିବ - ପଦ୍ମାର ପଡ଼ୋଶୀ ଯଦି କିଛି ସନ୍ଦେଶ ଦେଇଥିବେ। ଡକ୍ଟର ଧଳ ପ୍ରସ୍ତାବ ଦେଲେ।

ଡକ୍ଟର ଦାସ ଟେବୁଲରେ ସଂଯୁକ୍ତ ଥିବା କଲିଂବେଲ୍ ଦାବିଥିଲେ। ବେଲ୍ ଶୁଣି ସିଷ୍ଟର ହାଜିର ହେବାମାତ୍ରେ ଡକ୍ଟର କର ଜିଜ୍ଞାସା କଲେ - "ସିଷ୍ଟର, ଡକ୍ଟର ପଦ୍ମା ଲମ୍ବା ଛୁଟି ନେବାର କାରଣ ବିଷୟରେ ତାଙ୍କ ପଡ଼ୋଶୀ କିଛି କହୁଥିଲେ କି?"

- "ହଁ ସାର୍, ସିଏ କହୁଥିଲେ, ଡକ୍ଟର ପଦ୍ମା ବାହାହେବାପାଇଁ ମାଡ୍ରାସ୍ ଯାଇଛନ୍ତି।"

- "ଆଉ କ'ଣ କହୁଥିଲେ?" ଉଦ୍‌ବିଗ୍ନ ହୋଇ ମିଳିତ ସ୍ୱରରେ ସମସ୍ତେ ପଚାରିଲେ।

- "ସାର୍, ଡକ୍ଟର ପଦ୍ମା ଏଠାରୁ ରିଜାଇନ୍ କରି ମାଡ୍ରାସରେ ସେଟ୍‌ଲ କରିବେ ବୋଲି କହୁଥିଲେ।"

ଦୀର୍ଘନିଶ୍ୱାସଟିଏ ପକେଇ ସିଷ୍ଟରଙ୍କୁ ଯିବାକୁ କହି ଡକ୍ଟର କର ପଦ୍ମାର ହାତଲେଖା ଦରଖାସ୍ତଟିକୁ ଚାରିଚଉତ କରି ଭାଙ୍ଗି ନିଜ ବାମପଟ ଛାତି ପକେଟରେ ରଖି ପକେଟକୁ ଆଉଁସି ଆଉଁସି ଶୂନ୍ୟଦୃଷ୍ଟିରେ କାନ୍ଥଆଡ଼େ ଚାହିଁରହିଲେ।

ଅନ୍ୟ ଡାକ୍ତର ଦି'ଜଣ ମଧ୍ୟ କଫି ପିଇବା ଭୁଲିଯାଇ ଚୁପ୍‌ଚାପ୍ ବସିରହିଥିଲେ।

ଗରମ କଫିରୁ ଢ଼ୋକେ ପିଉ ପିଉ ମୁଁ ଅନ୍ୟମନସ୍କ ହୋଇଗଲି।

ମୋର ମନେପଡ଼ିଲା, ଛ'ମାସ ପୂର୍ବେ ଯେତେବେଳେ ମୁଁ ଯୋଗଦେଲି, ସେତେବେଳେ ବିଭାଗର ସବୁ ଡାକ୍ତରମାନେ ମତେ ଦେଖି ଖୁବ୍ ଖୁସି ହେଇଯାଇଥିଲେ। ନୂଆ ଚାକର ପିଲାଟିଏ ଆସିଲେ ଘରର ସଦସ୍ୟମାନେ ଯେମିତି ଅସରନ୍ତି ବୋଲହାକ କରନ୍ତି...

- ଏ ଗଲୁ, ଛାତ ଉପରେ ମୋ' ଗାମୁଛାଟା ଶୁଖୁଛି, ନେଇଆସିବୁ, ମୁଁ ଗାଧୋଇଯିବି...

- ହଇରେ, ପଇସା ନେଇ ଦଉଡ଼ି ଯା, ବରଗଛ ପାଖ ଗୁମୁଟିରୁ ଗୋଟେ ଉଇଲସ୍ ଫିଲ୍‌ଟର ସିଗାରେଟ୍ ଆଣିଦେ। ହଁ, ଶୁଣ୍, ବାପା ଯେମିତି ନ ଦେଖନ୍ତି।

- ଶୀଘ୍ରଯାଇ ମୋ ସ୍କୁଟରଟା ପୋଛି ଦେ'। ଅଫିସ୍ ଯିବାବେଳ ହେଲାଣି।

ଠିକ୍ ସେମିତି ଆମ ବିଭାଗର ଡାକ୍ତରମାନେ ମତେ ପାଇ ଯାବତୀୟ କାମ କରାଇବାରେ ଲାଗିଲେ।

ସକାଳର ରାଉଣ୍ଡ୍ ସରିଲାପରେ ସମସ୍ତେ କଫି ପିଉ ପିଉ ଗପରେ ମାତିଯାଆନ୍ତି। କେବେ ସୋନିଆ, ସାନିଆଙ୍କ କଥା ତ କେବେ ସାଇନା ଓ ସେରେନାଙ୍କ ଗପ - ପୁଣି ଫିଫା ମ୍ୟାଚ୍ ଚାଲିଲାବେଳେ ଅକ୍ଟୋପସ୍ ପଲ୍ ବିଷୟରେ ବଖାଣନ୍ତି। ଆଉ ମତେ ଦେଖିଲାମାତ୍ରେ ଗୋଟେ ପରେ ଗୋଟେ କାମ ବତାଇବାରେ ଲାଗିପଡ଼ନ୍ତି।

- ଡକ୍ଟର ବୈଭବ। ମେଲ୍‌ୱାର୍ଡ଼ରେ ନୂଆ ପେସେଣ୍ଟ ଆସିଲାଣି, ଯାଆ ଦେଖିଦେବ।

- ଆଜି କ୍ୟାବିନ୍ ଚାରି ନମ୍ବର ପେସେଣ୍ଟର ପେରିଟୋନିଆଲ୍ ଟ୍ୟାପ୍ ଯେମିତି ହେଲେ କରିବ।

- ଡକ୍ଟର ବୈଭବ, ବାଓକେମେଷ୍ଟ୍ରିରୁ ଫୋନ୍ ଆସିଥିଲା, ଫିମେଲ୍ ୱାର୍ଡ଼ ତେଇଶି ନମ୍ବର ପେସେଣ୍ଟର ବ୍ଲଡ୍ ସୁଗାର ତିରିଶ ବାହାରିଛି। ସିଷ୍ଟରଙ୍କୁ କୁହ ଟେନ୍ ପରସେଣ୍ଟ ଡେକ୍ସ୍ଟ୍ରୋଜ୍ ଲଗାଇବେ।

- ବୈଭବ, ଅଫିସରୁ ମୋ ଲିଭ୍ ବୁକ୍‌ଟା ଟିକେ ଆଣିଦିଅ। ମୋ ଉପରେ ଏତେ କାମ ପକାଉଥିବାରୁ ସେମାନଙ୍କୁ ବୋଧହୁଏ ଖରାପ ଲାଗୁଥିଲା। ସେଥିପାଇଁ ସେମାନେ ବେଳେବେଳେ ମତେ କହୁଥିଲେ - ବୈଭବ, ତୁମେ ସିନା ଏବେ ଆସିଲ, ଦୀର୍ଘ ପନ୍ଦରବର୍ଷ ହେଲାଣି କମ୍ପାନୀ କ୍ଷତିରେ ଚାଲୁଥିବାରୁ ଡାକ୍ତରଙ୍କ ନିଯୁକ୍ତି ବନ୍ଦ୍ ହେଇଯାଇଥିଲା। ତେଣୁ ବିଭାଗରେ ଜଣେହେଲେ ଜୁନିୟର ଡାକ୍ତର ନଥିଲେ। ଆମେ ଖୁବ୍ ଖଟିଛୁ। ତା' ତୁଳନାରେ ତୁମେ କି କାମ କରୁଛ ! ତା'ଛଡ଼ା, ଏ ବୟସରେ ଯେତେ କାମ କରିବ, ସେତେ ଶିଖିବ ଓ ଭବିଷ୍ୟତରେ ନାଁ କରିବ।

ମତେ ଅତ୍ୟଧିକ କାମ କରାଉଥିଲେ ବି ସେମାନଙ୍କର ମୋ'ପ୍ରତି ସହାନୁଭୂତି ଥିଲା ସେଥିପାଇଁ ପ୍ରତ୍ୟେକ ଶନିବାର ମତେ ଚାରିଟାରେ ଛୁଟି ଦେଇ ବୁର୍ଲାରେ ହାଉସ୍ ସର୍ଜନ ଥିବା ମୋ' ନବବିବାହିତା ପତ୍ନୀ 'ନିଧି' ପାଖକୁ ଯିବାପାଇଁ ସୁଯୋଗ ଦେଉଥିଲେ।

ମୁଁ ହିରୋହୁଣ୍ଡାରେ ଶନିବାର ସନ୍ଧ୍ୟାରେ ବୁର୍ଲା ଯାଇ ସୋମବାର ସକାଳେ ଫେରିଆସୁଥିଲି।

ଘଣ୍ଟେଅଧେ ଡେରି ହେଲେ ବି ସେମାନେ ମତେ କିଛି କହୁ ନଥିଲେ, ବରଂ ମୁଁ ଛୁଟିରେ ନ ରହି ଚାଲିଆସିଛି ଦେଖି ଆଶ୍ୱସ୍ତ ହେଉଥିଲେ।

ଦୁଇମାସ ପୂର୍ବେ ମୋ' ବ୍ୟାଚ୍‌ମେଟ୍ ଡକ୍ଟର ପଦ୍ମା ଯେତେବେଳେ ଏଠି ଯୋଗଦେଇଥିଲା, ସେତେବେଳେ ମୁଁ ଭାବିଥିଲି, ଯାହାହେଉ ମୋ' କାମର ଭାରଟା ଅଧା ହେଇଯିବ।

କିନ୍ତୁ ସେମିତି କିଛି ହେଲାନାହିଁ।

ବରିଷ୍ଠ ଡାକ୍ତରମାନେ ରାଉଣ୍ଡପରେ ମତେ କାମର ତାଲିକା ଧରେଇ ନିଜେ ପଦ୍ମା ସାଥିରେ ବସି ଗରମ କଫିର ମଜା ନେଉନେଉ ତା' ସହିତ କଥାବାର୍ତ୍ତା ହେଇ ଅନ୍ତରଙ୍ଗ ହେବାକୁ ଚେଷ୍ଟା କରୁଥିଲେ। ଡକ୍ଟର କରଙ୍କର ଆଉଟ୍‌ଡୋର ଥିଲାବେଳେ ସିଏ ପଦ୍ମାକୁ ସାଥିରେ ନେଉଥିଲେ। ସାମ୍‌ନାରେ ବସାଇ ପେସେଣ୍ଟ ଡିସ୍‌ପୋଜ୍ କରୁଥିଲେ। ପଦ୍ମା ଯୋଗଦେଲା ପରଠାରୁ ଡାକ୍ତରମାନେ ନିଜ ଚେହେରା ଓ ପୋଷାକ ପ୍ରତି ଅତ୍ୟଧିକ ଯତ୍ନଶୀଳ ହୋଇଉଠିଥିଲେ।

ଡକ୍ଟର କର ନିଜର ଗୋଲମରିଚଗୁଣ୍ଡ ସଦୃଶ କଳାଧଳା ଚୁଟିକୁ ରଙ୍ଗେଇ ଆଲକାତରା ଭଳି କଳା କରିଦେଇଥିଲେ।

ଡକ୍ଟର ଧଳ ହାଲ୍‌କା ରଙ୍ଗର ସାର୍ଟ ବଦଳରେ ହଟ୍ କଲରର ସାର୍ଟ, ଟି ସାର୍ଟ ଓ ଜିନ୍‌ସ ପିନ୍ଧିବା ଆରମ୍ଭ କରିଥିଲେ।

ଶେଷରେ ଡକ୍ଟର ଦାସ ବ୍ୟବହାର କରୁଥିବା ମୋଟା ଫ୍ରେମ୍‌ର ଚଷମାକୁ ବିଦାୟ ଦେଇ ଦାମୀ ରିମ୍‌ଲେସ୍ ଚଷମା ପିନ୍ଧିଥିଲେ।

ବର୍ଷ ବର୍ଷ ଧରି ଡକ୍ଟର୍ସ ରୁମ୍‌ରେ ରାଜତ୍ୱ କରୁଥିବା ଡେଟଲ୍, ଫିନାଇଲ୍ ଓ ଲାଇଜଲ୍‌ର ଗନ୍ଧକୁ ପରଫ୍ୟୁମର ମହକ ବିତାଡ଼ିତ କରିଥିଲା।

ସେତିକିରେ ସନ୍ତୁଷ୍ଟ ନ ହେଇ ଡକ୍ଟର କର ଉଚ୍ଚ ରକ୍ତଚାପର ବାହାନା କରି ଏ.ସି. ଚାଲୁଥିବା ନିବୁଜ ଡକ୍ଟର୍ସ ରୁମ୍‌ରେ ନିଛାଟିଆ ଦେଖି ନିଜର ବ୍ଲଡ୍‌ପ୍ରେସର୍ ସପ୍ତାହକୁ ଦୁଇତିନିଥର ପଦ୍ମା ହାତରେ ମପାଉଥିଲେ।

ଡକ୍ଟର ଧଳ ବି କିଛି କମ୍ ନଥିଲେ। ଥରେ ପଦ୍ମା କୌଣସି ଅସୁବିଧା ଯୋଗୁ ସ୍କୁଟି ଆଣି ନଥିଲା। ସେଦିନ ଡକ୍ଟର ଧଳ ନିଜ ଗାଡ଼ିରେ ଘରେ ଛାଡ଼ିଦେବେ ବୋଲି ବାରମ୍ବାର କହି ଶେଷରେ ନିଜ ଗାଡ଼ିରେ ବସାଇ ତା' ଘରେ ଛାଡ଼ିଦେଲେ।

ଡକ୍ଟର ଦାସ ବି କାହିଁକି ପଛରେ ପଡ଼ିବେ? ସେଥିପାଇଁ ଗୋଟେ ଦିନ କଫି ପିଉଥିଲାବେଳେ ପାଖରେ ବସିଥିବା ପଦ୍ମାକୁ ତୁମେ ଖୁବ୍ ଆନିମିକ୍ ଦିଶୁଛ କହି ତା' ତଳ

ଆଖିପତାକୁ ଟାଣି ଦେଖିଲାପରେ ତା' ହାତର ନଖସବୁ ଦେଖି ହେମୋଗ୍ଲୋବିନ୍ ଟେଷ୍ଟ୍ କରିବାପାଇଁ କହିଥିଲେ।

ପରୀକ୍ଷାକଲାରୁ ପଦ୍ମାର ହେମୋଗ୍ଲୋବିନ୍ ଚଉଦ ଆସିଥିଲା, ଯାହା ଥିଲା ନର୍ମାଲଠୁଁ ଅଧିକା।

ବରିଷ୍ଠ ଡାକ୍ତରଙ୍କ ଏ ନୂତନ ରୂପରେ ମୁଁ ଅତିଷ୍ଠ ହୋଇ ଇନ୍‌ଚାର୍ଯ ସିଷ୍ଟରଙ୍କ ସବୁ କହୁଥିଲି।

ସିଷ୍ଟର ସେମାନଙ୍କ ଆଡ଼େ ନଜର ନ ଦେଇ ମତେ କାମରେ ମନ ଦେବାକୁ କହୁଥିଲେ।

ଡିପାର୍ଟମେଣ୍ଟରେ ଡକ୍ଟର ପଣ୍ଡାଙ୍କ ଆଚରଣରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରିପାରି ନଥିଲି। ଡକ୍ଟର ପଣ୍ଡା ଏହି ବିଭାଗର ମୁଖ୍ୟ ଡାକ୍ତର ଥିଲେ। ତାଙ୍କୁ ରୋଗୀଦେଖାଠାରୁ ଆରମ୍ଭ କରି ଡାକ୍ତରଖାନାର ପ୍ରଶାସନ ଯାଏ ସବୁ ଦେଖିବାକୁ ପଡୁଥିଲା। ସେଥିପାଇଁ ୱାର୍ଡର କାମ ସରିବାପରେ ସିଏ କାହାସାଙ୍ଗେ ଆଳାପ ନ କରି ନିଜ ରୁମ୍‌କୁ ଚାଲିଯାଉଥିଲେ।

ମୁଁ ଅଧିକ କାମ କରେ ଜାଣି ସିଏ ମୋ' ଉପରେ ଖୁବ୍ ସନ୍ତୁଷ୍ଟ ଥିଲେ। ଅନ୍ୟ ଡାକ୍ତରଙ୍କ ପରି ପଦ୍ମା ପ୍ରତି ତାଙ୍କର କୋମଳ ମନୋଭାବ ନ ଥିଲା, ବରଂ କାମ କରେନି ବୋଲି ତା'ପ୍ରତି କଠୋର ଥିଲେ।

ଦଶପନ୍ଦରଦିନ ପୂର୍ବେ ପଦ୍ମା ଓ ମୁଁ ଏକାସାଙ୍ଗେ ଛୁଟିପାଇଁ ଆବେଦନ କରିଥିଲୁ।

ମୋର କଟକ ଯିବା ନିତ୍ୟାନ୍ତ ଜରୁରୀ ଥିଲା। ମା'ଫୋନ୍ କରିଥିଲେ। ମାମୁ ହଠାତ୍ ସଂଜ୍ଞାହୀନ ହୋଇ ଏକ ନର୍ସିଂହୋମରେ ଭର୍ତ୍ତି ହେଇଛନ୍ତି।

ପଦ୍ମା ତା' ପଡ଼ୋଶୀଙ୍କ ଝିଅର ଜନ୍ମଦିନ ପାଇଁ ଛୁଟି ମାଗିଥିଲା। ଦୁହେଁ ଦରଖାସ୍ତଧରି ଡକ୍ଟର ପଣ୍ଡାଙ୍କ ପାଖକୁ ଯାଇଥିଲୁ। ମୁଁ ଭାବିଥିଲି ଡକ୍ଟର ପଣ୍ଡା ମୋ' ଛୁଟି ନିଶ୍ଚୟ ମଞ୍ଜୁର କରିବେ।

ଡକ୍ଟର ପଣ୍ଡା ଆମ ଦୁଇଜଣଙ୍କୁ ଛୁଟି ନେବାର କାରଣ ନ ପଚାରି ପଦ୍ମାର ଦରଖାସ୍ତରେ ଦସ୍ତଖତ କରି ମୋ' ଦରଖାସ୍ତଟି ଫେରେଇଦେଇ ଗମ୍ଭୀର କଣ୍ଠରେ କହିଲେ, "ଡକ୍ଟର ପଦ୍ମା ଆସିଲାପରେ ତୁମେ ଛୁଟିରେ ଯିବ।"

ତାଙ୍କର ଅଭିନବ ଆଚରଣରେ ମୁଁ ହତାଶ, ବିସ୍ମିତ ଓ ଆହତ ହୋଇ ତାଙ୍କ ରୁମ୍‌ରୁ ବାହାରି ଆସି ସିଷ୍ଟରଙ୍କ ପାଖକୁ ଯାଇ ମୋର ଦୁଃଖ କହିଥିଲି।

ସ୍ମିତ ହସି ସିଷ୍ଟର କହିଥିଲେ, "ଡକ୍ଟର ପଦ୍ମା ଏବେ ଡକ୍ଟର ପଣ୍ଡାଙ୍କର ପ୍ରିୟଭାଜନ ହୋଇଯାଇଛନ୍ତି।"

- "କେମିତି ?"

- "ଦୁଇଦିନ ପୂର୍ବେ ଅବେଳରେ ଡକ୍ଟର ପଦ୍ମା ଚେଷ୍ଟ୍ ପେନ୍ ଯୋଗୁ ଡାକ୍ତରଖାନା ଆସିଥିଲେ ଏବଂ ଡକ୍ଟର ପଣ୍ଡା ଇମରଜେନ୍‌ସିରେ ତାଙ୍କର ଇ.ସି.ଜି. ଓ ଇକୋକାର୍ଡ଼ିଓଗ୍ରାମ୍ କରିଥିଲେ। ଅବଶ୍ୟ ରିପୋର୍ଟ ସବୁ ନର୍ମାଲ ବାହାରିଥିଲା।

କିଛିକ୍ଷଣ ଚୁପ୍ ରହି ସାମାନ୍ୟ ସଂକୁଚିତ ହୋଇ ସିଷ୍ଟର ପୁଣି କହିଥିଲେ, "ଡକ୍ଟର ବୈଭବ, ଆପଣ ମୋ ପୁଅବୟସର। ତେଣୁ ମୁଁ ଆପଣଙ୍କୁ ଅଧିକ କିଛି କହିବାକୁ ଚାହୁଁନାହିଁ।

ସିଷ୍ଟରଙ୍କ ପାଖରୁ ଉଠିଆସି ଚୁପ୍‌ଚାପ୍ ବସି ଡକ୍ଟର ପଣ୍ଡାଙ୍କ ପକ୍ଷପାତିତାର କାରଣ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ମୋର ଅବୁଝା ମନକୁ ବୁଝାଇଥିଲି। ଯଦି ସର୍ବ ରିପୁକୁ ବଶ କରିଥିବା ବିଶ୍ୱାମିତ୍ର ଅଚିରେ ମେନକାଙ୍କ ବଶତା ସ୍ୱୀକାର କରିଥିଲେ, ତେବେ ଦୁର୍ବଳତାରେ ଭରା ଅତି ସାଧାରଣ ମଣିଷ ଡକ୍ଟର ପଣ୍ଡା ପଦ୍ମାର ହୃଦୟର ସ୍ପନ୍ଦନ ପରୀକ୍ଷା କରୁକରୁ ନିଜର ପ୍ରଭୁତ୍ୱ ହରାଇ ତା' ପ୍ରତି ଅନୁରାଗୀ ହେଇଯିବା କେଉଁ ବଡ଼ କଥା !

ଡକ୍ଟର୍ସ ରୁମ୍‌ର କବାଟ ଖୋଲିବାର ଶବ୍ଦରେ ମୁଁ ପ୍ରକୃତିସ୍ଥ ହୋଇ ଦେଖିଲି, ମୋର କଫି ଗ୍ଲାସ୍ ପୂରା ଖାଲି ହେଇଯାଇଛି। ଅନ୍ୟ ଡାକ୍ତରମାନେ, ପଦ୍ମା ଚାଲିଯିବାର ଦୁଃଖରେ ମ୍ରିୟମାଣ ହେଇ, କୌଣସି ଆଗ୍ରହ ନ ଥାଇ ବି, ଉଷୁମ ହେଇଯାଇଥିବା କଫିରୁ ଢ଼ୋକେଢ଼ୋକେ ପିଉଛନ୍ତି।

କବାଟ ଆଡ଼େ ଚାହିଁ ଦେଖିଲି, ସଦ୍ୟ ଡାକ୍ତରୀ ପାସ୍ କରି ବେକରେ ଷ୍ଟେଥୋ ଝୁଲାଇଥିବା ଜଣେ ନାର୍ସେଣ୍ଟ ଲେଡ଼ି ଡକ୍ଟରଙ୍କ ସାଙ୍ଗରେ ସିଷ୍ଟର ରୁମ୍ ଭିତରେ ପଶି ସମସ୍ତଙ୍କ ଉଦ୍ଦେଶ୍ୟରେ "ଇଏ ଡକ୍ଟର ସୁପ୍ରିୟା, ନୂଆ ମେଡ଼ିକାଲ ଅଫିସର। ଆଜିଠାରୁ ଏଠାରେ କାମ କରିବେବୋଲି ଡକ୍ଟର ପଣ୍ଡା ନିର୍ଦ୍ଦେଶ ଦେଇଛନ୍ତି।" କହି ଫେରିଗଲେ।

ସୁପ୍ରିୟାକୁ ଦେଖିଲାମାତ୍ରେ ବରିଷ୍ଠ ଡାକ୍ତରମାନେ ପଦ୍ମା ଚାଲିଯିବାର ଦୁଃଖକୁ ଭୁଲିଯାଇ ଉଲ୍ଲସିତ ହୋଇ ସେମାନଙ୍କ ଅଧାପିଆ କଫି ଗ୍ଲାସକୁ ଟେବୁଲ୍ ଉପରେ ଛାଡ଼ି ଚୌକିରୁ ଉଠିପଡ଼ିଲେ ଓ ସୁପ୍ରିୟା ପାଖକୁ ଆସି ଜଣକ ପରେ ଜଣେ ତା'ସାଙ୍ଗେ ଆବଶ୍ୟକତାଠାରୁ ଅଧିକ ସମୟ ହାତ ମିଳାଇ ନିଜନିଜର ପରିଚୟ ଦେବାରେ ଲାଗିଲେ।

ସେମାନଙ୍କ ନିର୍ଲଜ୍ଜ ବ୍ୟବହାରରେ ଚିଡ଼ିଯାଇ ଡକ୍ଟର୍ସ ରୁମ୍‌ରୁ ମୁଁ ଝଡ଼ପରି ବାହାରି ସିଧା ସିଷ୍ଟରଙ୍କ ପାଖକୁ ଯାଇ ପଚାରିଲି - "ସିଷ୍ଟର, ଏ ମଧ୍ୟବୟସ୍କ ଡାକ୍ତରମାନେ ବିବାହିତ କି ନାହିଁ ?"

ମୋ ମୁହଁକୁ କିଛିକ୍ଷଣ ଅବାକ୍ ହେଇ ଚାହିଁଲାପରେ ସିଷ୍ଟର କହିଲେ, "ସମସ୍ତେ ବିବାହିତ ଓ ସନ୍ତାନସନ୍ତତିଙ୍କ ଜନକ।"

"ତା' ହେଲେ ଏମାନେ ଝିଅଟିଏ ଦେଖିଲେ ଏମିତି ଲାଳେଇପାଳେଇ ହୁଅନ୍ତି କାହିଁକି ।"

ଈଷତ୍ ହସି ସିଷ୍ଟର କହିଲେ - "ସେମାନଙ୍କୁ ଚାଳିଶିଆ ଧରିଛି ।"

- "ମାନେ ?"

- "ବୟସ ଚାଳିଶ ପାର୍ ହେଲେ ହୃତ୍‌ପିଣ୍ଡ ଓଜନିଆ ହେଇଯାଏ ଏବଂ ଆଖି ଖରାପ ହେଇଯାଇ ପାଖଜିନିଷ ଭଲ ଦିଶେନି, ସେଥିପାଇଁ ପତ୍ନୀ ଭଲ ନ ଦିଶି ଅନ୍ୟ ଝିଅମାନେ ଭଲ ଦିଶନ୍ତି ଓ ଭାରୀ ହୃଦୟକୁ ହାଲ୍‌କା କରିବାପାଇଁ ବୟସ୍କ ଲୋକମାନେ ସେଇ ଝିଅମାନଙ୍କୁ ହୃଦୟର କିଛିକିଛି ଅଂଶ ବିତରଣ କରିଥାଆନ୍ତି ।"

ଆତଙ୍କିତ ହୋଇ ପଚାରିଲି - "ମତେ ଚାଳିଶ ବର୍ଷ ହେଇଗଲେ ମୁଁ ବି ଏମାନଙ୍କ ପରି ହେଇଯିବି ?"

- "ଚାଳିଶ ଡେଇଁ, ବଳେ ଜାଣିବେ ।"

# ପାପପୁଣ୍ୟ

କଳାପୋଷାକଧାରୀ ଦୁଇଜଣ ମିତାକୁ ଆକାଶ ଛୁଇଁଲା ଭଳି ଏକ ବହୁତଳ ବିଶିଷ୍ଟ ଅଟ୍ଟାଳିକାର ଲିଫ୍‌ଟରେ ଉପର ମହଲାର ଏକ ପ୍ରଶସ୍ତ କକ୍ଷରେ ଛାଡ଼ିଦେଇ ଉଭେଇ ଗଲାଭଳିଆ କେଉଁଆଡ଼େ ଚାଲିଗଲେ । ସେଠାରେ ପଡ଼ିଥିବା ଅନେକ ଲମ୍ବା ଲମ୍ବା ବେଂଚରେ ପିଲାଠାରୁ ବୃଦ୍ଧ ପର୍ଯ୍ୟନ୍ତ ସବୁ ବୟସର ଲୋକମାନେ ମୌନବ୍ରତ ଧାରଣ କଲାଭଳିଆ ଚୁପ୍‌ଚାପ ବସିରହିଥିଲେ । ତେଣୁ କକ୍ଷଟି ନିସ୍ତବ୍‌ଧ ଥିଲା ।

ମିତା ଖାଲିଥିବା ଏକ ବେଞ୍ଚରେ ବସିପଡ଼ି ଦେଖିଲା ହଲ୍‌ର ଶେଷ ମୁଣ୍ଡରେ ଜଣେ ହାତରେ ଲମ୍ବା ନାମ ତାଲିକା ଧରି ଠିଆ ହୋଇଛନ୍ତି ଏବଂ ସିଏ ଯାହାର ନାମ ଘୋଷଣା କରୁଛନ୍ତି ସେହି ବ୍ୟକ୍ତି ସଂଲଗ୍ନରେ ଥିବା କୋଠରିକୁ ଯାଉଛନ୍ତି । ମିତା ଭାବିଲା ସେହି କୋଠରିରେ ବୋଧହୁଏ ସାକ୍ଷାତକାର ନିଆହେଉଛି ।

ମିତା ପାଇଁ ସାକ୍ଷାତକାରଟା କିଛି ନୂଆ କଥା ନୁହେଁ । ଡାକ୍ତର ମିତା ତା ଜୀବନରେ ଚାକିରି ପାଇଁ ଓ ଚାକିରି ପାଇଲା ପରେ ପ୍ରମୋଶନ ପାଇଁ ଗତ ଷୋଳବର୍ଷ ଭିତରେ ଅନେକ ସାକ୍ଷାତକାର ଦେଇଛି । ମିତାକୁ ସବୁବେଳେ ସାକ୍ଷାତକାର ନେଉଥିବା ମୁଖ୍ୟ ବ୍ୟକ୍ତିଙ୍କୁ ଯମ, ତାଙ୍କ ପାଖରେ ବାୟୋଡ଼ାଟା ଓ ଗୁପ୍ତ ଚରିତ୍ର ପଞ୍ଜିକା ଧରିଥିବା ପର୍ସନାଲ ଅଫିସରଙ୍କୁ ଚିତ୍ରଗୁପ୍ତ ଏବଂ ଅନ୍ୟାନ୍ୟ ଉପସ୍ଥିତ ପରୀକ୍ଷକମାନଙ୍କୁ ଯମଦୂତ ଭଳି ଲାଗେ । ବାପ୍‌ରେ ବାପ୍ ! ମିତାର ସାକ୍ଷାତକାରକୁ କୋକୁଆ ଭୟ !

ଆଉ ମେଡ଼ିକାଲ ପଢ଼ିଲାବେଳେ ଦେଉଥିବା କ୍ଲିନିକାଲ, ଓରାଲ୍ ପରୀକ୍ଷା ତ ଏ ସବୁ ସାକ୍ଷାତକାରର ଗୋସେଇଁ ବାପା । ପରୀକ୍ଷା ଦିନ ପ୍ରଫେସର, ଆସୋସିଏଟ୍ ପ୍ରଫେସର ଓ ତାଙ୍କ ପଛରେ ଠିଆ ହେଉଥିବା ଦେଖଣାହାରୀ ପିକି ଛାତ୍ରଙ୍କ ସାମନା କରି ଜଣକ ପରେ ଜଣେ ମରଣ ମୁହଁରୁ ନିସ୍ତାର ପାଇ ଫେରୁଥିବା ଛାତ୍ରମାନଙ୍କୁ ଭୟରେ ତଣ୍ଟି ଶୁଖିଯାଇ,

ଦେହ ହାତ ଥରୁଥିବା ଉତ୍ତବି ପରୀକ୍ଷାର୍ଥୀମାନେ ବେଢ଼ିଯାଇ ନିଜର ଅବଗତ ପାଇଁ କିଏ କେଉଁ ପ୍ରଶ୍ନ ପଚାରିଲେ ବୁଝନ୍ତି। କହିବା ବାହୁଲ୍ୟ ଜଣକୁ ପଚରା ହେଇଥିବା ପ୍ରଶ୍ନ କେବେହେଲେ ଦ୍ୱିତୀୟ ଥର ଅନ୍ୟ କାହାକୁ ପଚରାଯାଏ ନାହିଁ।

ଏଠାରେ ସାକ୍ଷାତକାରୀମାନଙ୍କୁ ଭୟଭୀତ ନ କରାଇବା ପାଇଁ ବୋଧହୁଏ ପ୍ରବେଶ ଓ ପ୍ରସ୍ଥାନ ଦ୍ୱାର ଅଲଗା କରିଦେଇଛନ୍ତି। ତେଣୁ ଭିତରକୁ ଯାଉଥିବା ବ୍ୟକ୍ତିମାନେ ଆଉ ଫେରୁନଥିଲେ। ସେହି କାରଣରୁ ମିତାକୁ ଆଜି ଆଦୌ ଡର ଲାଗୁନଥିଲା।

ମିତାର ନାମ ଘୋଷଣା କରାହେଲା ମାତ୍ରେ ମିତା ଉଠିପଡ଼ି ପର୍ଦ୍ଦା ଆଡ଼େଇ ସଂଲଗ୍ନ କୋଠରି ଭିତରେ ପଶି ଦେଖିଲା ବିଚାରାଳୟରେ ବିଚାରପତି ବସିଲା ଭଳି ଉଚ୍ଚ ଆସନରେ ଜଣେ ମଧ୍ୟବୟସ୍କ ସୁଦର୍ଶନ ବ୍ୟକ୍ତି ବସିଛନ୍ତି। ତାଙ୍କ ଆଗରେ ନାଲି କନାରେ ଢ଼ଙ୍କା ହେଇଥିବା ଏକ ବିରାଟ ଟେବୁଲ। ପଛ କାନ୍ଥର ଉପରିଭାଗରେ ଅନ୍ଧପୁଟୁଳି ବାନ୍ଧି ପଥର ପରି ହାତରେ ଉପର ତଳ ହେଉଥିବା ଗୋଟିଏ ସତ ଛୋଟ ନିକିତି ଏବଂ ତା ତଳେ ସିନେମା ହଲର ପରଦା ଭଳି ଝୁଲନ୍ତ ଏକ ଲମ୍ବା ଚୌଡ଼ା ପରଦା।

ସେହି ବ୍ୟକ୍ତିଙ୍କ ନିର୍ଦ୍ଦେଶ ଅନୁଯାୟୀ ମିତା ତାଙ୍କ ବାମପଟେ ଥିବା କାଠଗଡ଼ାରେ ଠିଆହେଲା। ପରେ ସିଏ ନିଜର ପରିଚୟ ଦେଇ କହିଲେ - ମୁଁ ହେଉଛି ଫଳଦାତା ଯମରାଜ ଓ ମୋ ଟେବୁଲର ଡାହାଣ ପଟେ ବସିଥିବା ବ୍ୟକ୍ତି ଜଣକ ମୋ ସହକାରୀ - ଚିତ୍ରଗୁପ୍ତ।

ତାଙ୍କ ମହୁଁରୁ ଏ ବାକ୍ୟଟି ଶୁଣିଲାମାତ୍ରେ ମିତା ଜାଣିଦେଲା ତାକୁ ସାଙ୍ଗରେ ଆଣିଥିବା କଳାପୋଷାକଧାରୀ ଦ୍ୱୟ ଯମଦୂତ ଓ ଏହି ଅଟ୍ଟାଳିକାର ପୋର୍ଟିକୋ ତଳେ ଦେଖିଥିବା ସୁସଜ୍ଜିତ ମଇଁଷିଟି ଯମରାଜାଙ୍କ ବାହନ।

ଆଖି ଆଗରେ ଚିତ୍ରଗୁପ୍ତଙ୍କୁ ଦେଖି ପିଲାଦିନୁ ଶୁଣିଆସିଥିବା ପାଞ୍ଜି ଉପରେ ନଜର ପକାଇବା ପାଇଁ ମିତା ତାଙ୍କ ଟେବୁଲ ଉପରକୁ ଚାହିଁ ଦେଖିଲା ସେଠାରେ ଏକ କମ୍ପ୍ୟୁଟର ଥୁଆହେଇଛି ଏବଂ ଚିତ୍ରଗୁପ୍ତଙ୍କ ହାତ ମାଉସ୍ ଉପରେ। ମିତା ଖୁସି ହୋଇଯାଇ ହସିପକାଇଲା - ଓ, ଯମପୁରରେ ତାହେଲେ ମଣିଷ ଉଦ୍‌ଭାବନ କରିଥିବା କମ୍ପ୍ୟୁଟରର ବ୍ୟବହାର ଶିଖି ସବୁ କମ୍ପ୍ୟୁଟରାଇଜଡ଼ କରିସାରିଲେଣି।

ମିତାର ଭାବନାରେ ପୂର୍ଣ୍ଣଛେଦ ପକାଇ ଟିଭିର ରିଅଲିଟି ଶୋ'ରେ ଭାଗନେବାକୁ ଯାଇଥିବା ପଦପ୍ରାର୍ଥୀମାନଙ୍କୁ ନିୟମ କାନୁନ ବତାଇଲା ଭଳି ଯମରାଜା କହିଲେ - ଏ ବିଚାଳାଳୟରେ ତୁମେ ଜୀବନସାରା କରିଥିବା କର୍ମ ଅନୁସାରେ ତୁମର ଭାଗ୍ୟ ନିର୍ଦ୍ଧାରଣ କରାହେବ। ପାପକର୍ମ - ମାନେ ଅଧର୍ମ, ନିନ୍ଦନୀୟ କାର୍ଯ୍ୟ କରିଥିଲେ ତୁମକୁ ବିଯୁକ୍ତ

ନମ୍ବର ଓ ସୁକର୍ମ ବା ଦେବ ସ୍ୱଭାବର କର୍ମ କରିଥିଲେ ଯୁକ୍ତ ନମ୍ବର ମିଳିବ। ଶେଷରେ ଦୁଇ ବିଭାଗର ନମ୍ବରକୁ ମିଶାଇ ସର୍ବମୋଟ ନମ୍ବର ବାହାର କରାହେବ। ସେହି ନମ୍ବର ଯଦି ଯୁକ୍ତ ଘରେ ରହିବ ତାହେଲେ ତୁମେ ସ୍ୱର୍ଗ ଯିବ। ବିଯୁକ୍ତ ନମ୍ବର ରହିଲେ ନର୍କକୁ ଯିବ। କିନ୍ତୁ ତୁମ ନମ୍ବର ଯଦି ଯୁକ୍ତ ବା ବିଯୁକ୍ତରେ ନରହି ଶୂନ୍ୟରେ ରହିବ ତାହେଲେ ତୁମକୁ ପୁଣିଥରେ ମର୍ତ୍ତ୍ୟକୁ ଫେରିଯିବାକୁ ପଡ଼ିବ।

ଯମରାଜ ସାମାନ୍ୟ ଅଟକି ପୁନର୍ବାର କହିଲେ - ଆମର ଏ ଦପ୍ତରର ବିଚାର ସଂପୂର୍ଣ୍ଣରୂପେ ନ୍ୟାୟଧର୍ମୀ - ଆମେ ଏଠାରେ ଟ୍ରାନ୍ସପରେନ୍ସି ଉପରେ ଯଥେଷ୍ଟ ଜୋର ଦେଇଥାଉ। ସେଥିପାଇଁ ମୁଁ ଏ ସବୁ ତୁମକୁ କହିଲି।

ମିତା ସବୁ ବୁଝିଗଲା ପରି ମୁଣ୍ଡ ଟୁଙ୍ଗାରିଲା।

ଏହା ପରେ ଯମରାଜ ତାଙ୍କ ଟେବୁଲ ଉପରେ ଥିବା ଏକ ବୋତାମକୁ ଟିପିଥିଲେ ଯଦ୍ୱାରା ତାଙ୍କ ପଶ୍ଚାତ ଭାଗରେ ଝୁଲୁଥିବା ପର୍ଦ୍ଦା ଦୁଇଭାଗ ହୋଇ ଦୁଇପଟକୁ ଟାଣି ହେଇଯାଇଥିଲା ଓ ଭିତରେ ଥିବା ତିନୋଟି ଦ୍ୱାର ଦୃଶ୍ୟମାନ ହୋଇଥିଲା।

ବାମ ପାଖରେ ଥିବା ପ୍ରଥମ ଅନ୍ଧାରୁଆ ଦ୍ୱାର ଉପରେ କଳା ଅକ୍ଷରରେ ଲେଖାହେଇଥିଲା 'ନର୍କ' ଏବଂ ସେହି ଦ୍ୱାରର ଦୁଇ ପାର୍ଶ୍ୱରେ ଦୁଇଟି ଶ୍ୟାମଳ ତଥା ବଳବାନ ଲୋକ ହାତରେ ତେଣ୍ଟା ଧରି ଠିଆ ହେଇଥିଲେ। ମିତା ଜାଣିଲା ସେଠାରେ ପାପୀ ପାଦ ଦେବାମାତ୍ରେ ସେମାନେ ନିଶ୍ଚୟ ତାକୁ ଟାଣି ନେଇ ଚୁଲି ଉପରେ ଫୁଟୁଥିବା ତେଲ କଡ଼େଇରେ ପକାଇ ମାଛ ଛାଣିଲା ଭଳି ଛାଣିଦେବେ !

ମିତା ଶିହରୀ ଉଠି ସେ ଦ୍ୱାରରୁ ଦୃଷ୍ଟି ଫେରାଇ ମାଟିଆ ରଂଗରେ 'ମର୍ତ୍ତ୍ୟ' ଲେଖାହେଇଥିବା ମଝିଦ୍ୱାରକୁ ଚାହିଁ ଦେଖିଲା ସେଠାରେ କୌଣସି ଦ୍ୱାରପାଳ ନଥିଲେ ଏବଂ କଟକ ମୁନିସିପାଲଟିର ରାସ୍ତା ଲାଇଟ୍ ପରି ମିଂଜିମିଂଜି ବଲ୍‌ବଟିଏ ଜଳୁଛି।

ଶେଷରେ ଆଲୋକମାଳାରେ ସଜ୍ଜିତ ତୃତୀୟ ତଥା ଡାହାଣ ପଟର ଦ୍ୱାର ତା'ର ଦୃଷ୍ଟି ଆକର୍ଷଣ କଲା। ସେହି ଦ୍ୱାରର ଉପରି ଭାଗରେ ସମୁଦ୍ରନୀଳ ରଂଗରେ ଲେଖାହେଇଥିଲା 'ସ୍ୱର୍ଗ'।

ମିତା ପୁଲକିତ ହେଲା। ମାଟ୍ରିକ ପରୀକ୍ଷା ଦେଇସାରି ସିଏ ଯେମିତି ସମସ୍ତଙ୍କୁ କହି ବୁଲୁଥିଲା 'ମୋର ଫାଷ୍ଟ ଡିଭିଜନ ଥୁଆ !' ଠିକ୍ ସେମିତି ମୋ ଭଳି ପୁଣ୍ୟାତ୍ମା ପାଇଁ ସ୍ୱର୍ଗ ଥୁଆ ଭାବି ଉଲ୍ଲସିତ ହୋଇ ସ୍ୱର୍ଗଦ୍ୱାର ଆଡ଼େ ଚାହିଁ ରହିଲା।

ସେହି ଦ୍ୱାରର ଦୁଇପାର୍ଶ୍ୱରେ ପୁଣ୍ୟକର୍ମାମାନଙ୍କୁ ପାଛୋଟି ନେବାପାଇଁ ଏୟାର

ହୋଷ୍ଟେସ୍‌ଙ୍କ ପରି ନମସ୍କାର କରିବା ଭଙ୍ଗୀରେ ସ୍ୱଚ୍ଛ ପୋଷାକ ପରିହିତା ଦୁଇ ଆକର୍ଷଣୀୟା ଲଳନା ଦଣ୍ଡାୟମାନ ହୋଇଥିଲେ। ମୁଙ୍ଗେରୀଲାଲ ଭଳି ମିତା କଳ୍ପନା କଲା - ଏମାନେ ନିଶ୍ଚୟ ସ୍ୱର୍ଗପୁରର ଆଇଟମ୍ ଗାର୍ଲ ହେଉଥିବେ। ସେଠାରେ ପୁଣ୍ୟଶୀଳ ଲୋକଙ୍କ ପାଇଁ ଅନ୍ୟାନ୍ୟ ମନୋରଂଜନ କାର୍ଯ୍ୟକ୍ରମ ମଧ୍ୟ ପକ୍କା ଥିବ - ଯେମିତି ରାଜୁ ଶ୍ରୀବାସ୍ତବର କମେଡ଼ି ଶୋ।'

ଆଃ - ମିତା ଖୁସି ହେଇଗଲା। ଏଠି ଟିଭିରେ କମେଡ଼ି ଶୋ' ଦେଖିଲାବେଳେ ତାକୁ ହଇରାଣ ହରକତ କରିବା ପାଇଁ କେହି ନ ଥିବେ ଓ ସିଏ ଶାନ୍ତିରେ ବସିକି ଦେଖିବ। ଘରେ ତା'ର ପ୍ରିୟ କାର୍ଯ୍ୟକ୍ରମ ଦେଖିଲା ବେଳେ ଝିଅ ଖଟରେ ଗୋଡ଼ଲମ୍ବେଇ ବସିପଡ଼ି ବରାଦ କରେ - ମା' ଫ୍ରିଜ୍‌ରୁ ପାଣି ବୋତଲଟେ ଆଣିଦିଅନା- ଭାରି ଶୋଷ ଲାଗୁଛି। ପାଣି ବୋତଲଟା ତା ହାତକୁ ବଢ଼ାଇ ଦେଇ ଟିଭି ସାମନାରେ ବସି ପଡ଼ିଲା ମାତ୍ରେ ପୁଅ କହେ, ମା' ପ୍ଲିଜ୍ ମୋ ରୁମ୍‌ରୁ କୁର୍‌କୁରେ ପ୍ୟାକେଟ୍‌ଟା ଆଣିଦିଅତ ! ମୁଁ ଟିଭି ଦେଖି ଦେଖି ଖାଇବି।

କୁର୍‌କୁରେ ପ୍ୟାକେଟ୍‌ଟା ପୁଅ ହାତକୁ ବଢ଼ାଇଦେଇ ଆଉ କିଛି କାମ କିଏ ବତେଇବେନି ଭାବି ବସିବାକୁ ଯାଉଥିବାବେଳେ ଡ୍ରଇଁ ରୁମରେ ଫୋନ୍‌ଟା ବାଜିଉଠେ ଓ ମିହିର ସର୍ବଜ୍ଞ ଭଳି ମିତାକୁ କୁହନ୍ତି - ଏଇ ତୁମର ଫୋନ୍ ହୋଇଥିବ - ଯାଇ ଉଠାଅ !

ମିତା ସେ ବିରକ୍ତିକର ଭାବନାକୁ ସେହିଠାରେ ଅଟକାଇ ଦେଇ ସ୍ୱର୍ଗଦ୍ୱାର ଆଡ଼କୁ ମୁହାଁଇବା ପାଇଁ ଯମରାଜାଙ୍କ ହୁକୁମନାମାକୁ ଅପେକ୍ଷା କରି ରହିଲା।

ଯମରାଜା ମିତାକୁ ଅସ୍ଥିର ହେବାର ଦେଖି ମିତାର କେଉଁ ବିଭାଗରେ କେତେ ନମ୍ବର ଅଛି ଜଣାଇଦେବା ପାଇଁ ଚିତ୍ରଗୁପ୍ତଙ୍କୁ କହିଲେ।

ଚିତ୍ରଗୁପ୍ତ ମାଉସ୍‌କୁ ଏପଟ ସେପଟ କରି ଦୁଇ ଥର କ୍ଲିକ୍ କଲାପରେ କମ୍ପ୍ୟୁଟର ପର୍ଦ୍ଦାଆଡ଼େ ଚାହିଁ କହିଲେ - ତାଙ୍କ ପାପଘର ଶୂନ୍ୟ।

ମିତା ମୁହଁରେ ଅଭିମାନ ଭରା ହସ !

- ପୁଣ୍ୟ ଘର ବି ଶୂନ୍ୟ, ତେଣୁ ଆଗ୍ରିଗେଟ୍ ଶୂନ୍ୟ।

ଚିତ୍ରଗୁପ୍ତଙ୍କ ବକ୍ତବ୍ୟ ଶୁଣି ମିତା ମୁହଁରୁ ହସ ଲିଭିଯାଇ ଅବିଶ୍ୱାସର କଳାବାଦଲ ଛାଇ ହୋଇଗଲା ଓ ସିଏ ଦେଖିଲା ଧର୍ମରାଜାଙ୍କ ପଛପଟେ ପରୀ ଧରିଥିବା ନିକିତିଟି ଆଉ ଉପର ତଳ ନ ହୋଇ ବଣିଆ ଦୋକାନ ତରାଜୁ ସଦୃଶ ଗୋଟିଏ ସରଳରେଖାରେ ରହିଯାଇଛି ଓ ତାର କଣ୍ଟାଟି ଠିକ୍ ମଝିରେ ସ୍ଥିର ହୋଇ ରହିଯାଇଛି।

●

ଫଳଦାତା ମିତା ଉଦ୍ଦେଶ୍ୟରେ କହିଲେ - ତୁମେ ଜୀବନରେ କିଛି ପାପ କରିନାହଁ ତେଣୁ ନର୍କ ଯିବାରୁ ରକ୍ଷା ପାଇଲ। କିନ୍ତୁ କୌଣସି ପୁଣ୍ୟକାମ କରିନଥିବାରୁ ସ୍ୱର୍ଗର ଦ୍ୱାର ତୁମ ପାଇଁ ବନ୍ଦ ହୋଇଗଲା। ଏବେ ତୁମକୁ ପୁନର୍ବାର ମର୍ତ୍ତ୍ୟକୁ ଫେରିଯିବାକୁ ପଡ଼ିବ।

ପରୀକ୍ଷାରେ ଖୁବ୍ ଭଲକରିଥିବା ସବ୍‌ଜେକ୍ଟରେ ଫେଲ ହୋଇଗଲେ ଛାତ୍ରମାନେ ଯେମିତି ଦୁଃଖରେ ଭାଙ୍ଗିପଡ଼ି ପରୀକ୍ଷାଖାତାର ପୁର୍ନବିଚାର ପାଇଁ ଆବେଦନ କରନ୍ତି ଠିକ୍ ସେହିପରି ମିତା ଯମରାଜାଙ୍କୁ ଅନୁନୟ ବିନୟ ହୋଇ କହିଲା - ସାର ପ୍ଲିଜ୍, ଆପଣ ଚିତ୍ରଗୁପ୍ତ ମହାଶୟଙ୍କୁ କୁହନ୍ତୁ ମୋର ପୂଣ୍ୟଘର ଭଲକରି ଦେଖିବେ। ସିଏ ନିଶ୍ଚୟ ଭୁଲରେ ଆଉ କାହା ନମ୍ବରକୁ ମୋର ଭାବି କହିଦେଇଛନ୍ତି, କାହିଁକି ନା ମୋର ଜ୍ଞାନ ହେବା ଦିନଠାରୁ ମୁଁ ପୁଣ୍ୟ ସଂଚୟ କରିଚାଲିଛି। ଜୀବନରେ ସବୁବେଳେ ସତ କହିଛି। ନ୍ୟାୟରେ ରହିଛି। କାହା ସାଂଗେ ବିଶ୍ୱାସଘାତକତା କରିନି ବା କାହାରି କୁତ୍ସା ରଚନା କରିନି। ଲାଂଚ ଦେଇନି କି ଲାଂଚ ଖାଇନି। ଜୀବନସାରା ନିରାମିଷ ଆହାର ଭୋଜନ କରିଛି। ସରକାରଙ୍କୁ ନ ଲୁଚାଇ ରୋଜଗାର ଟଙ୍କାର ସଠିକ ବିବରଣୀ ଜଣାଇ ଇନ୍‌କମ୍ ଟ୍ୟାକ୍ସ ବି ଦେଇଛି। ଏ ସବୁ କ'ଣ ପୁଣ୍ୟରେ ଗଣାନୁହେଁ? ଗୋଟେ ନିଃଶ୍ୱାସରେ ଏତିକି କହିସାରି ମିତା ଦମ୍ ନେଲା।

ସବୁଶୁଣି ସାରି ଯମରାଜା କହିଲେ - ତୁମେ ଯାହାସବୁ କରିଛ ବୋଲି କହିଗଲ ସେ ସବୁ ପାଇଁ କିଛି ନମ୍ବର ମିଳିବନି। ଯେମିତି ଜୀବନରେ ସତ କହିବା କଥା ତୁମେ କହିଛ। ନ୍ୟାୟରେ ରହିବା କଥା ତୁମେ ରହିଛ। ଯଦି ଏତିକି କରି ନ ଥାଆନ୍ତ ତାହେଲେ ତୁମକୁ ମାଇନସ୍ ମାର୍କ ମିଳିଥାଆନ୍ତା ଓ ତୁମେ ନର୍କଗାମୀ ହୋଇଥାଆନ୍ତ।

- ମୁଁ ଜୀବନସାରା ଯେଉଁ ପୂଜା, ବ୍ରତ, ଉପବାସ କରିଛି - ଚାରିଧାମ ଯାଇ ଠାକୁରମାନଙ୍କୁ ଦର୍ଶନ ତଥା ଗଙ୍ଗାସ୍ନାନ କରିଛି ସେ ସବୁ ପାଇଁ ମତେ କ'ଣ କିଛି ନମ୍ବର ମିଳିବ ନାହିଁ? ତା ଛଡ଼ା ମୋ ଘରେ କାମ କରୁଥିବା ମାଳି, ଆୟା, ରୋଷେୟାଙ୍କୁ ପ୍ରତ୍ୟେକ ବର୍ଷ ଅନେକ ପୁରୁଣା ଜିନିଷ ଦାନ କରିଛି। ସେ ସବୁ ଦାନର କ'ଣ କୌଣସି ମୂଲ୍ୟ ନାହିଁ? ଯଦି ଏ ସବୁ ପୁଣ୍ୟ ନୁହେଁ ତାହେଲେ ପୁଣ୍ୟର ସଂଜ୍ଞା କ'ଣ ମତେ କୁହନ୍ତୁ - ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ପଚାରିଲା ଭଳି ମିତା ଯମରାଜାଙ୍କୁ ପଚାରିଲା।

କନ୍‌ଫରେନ୍ସର ଚେୟାର ପରସନ ଭଳି ଗମ୍ଭୀର ହୋଇ ଯମରାଜା କହିଲେ - ମନଛାଡ଼ି ଯାଇଥିବା ଓ ତୁମ ପାଇଁ ଅଦରକାରୀ ହୋଇଯାଇଥିବା କିଛି ଜିନିଷ ଦାନ କରିଦେଲେ ବା ବ୍ରତ ଉପାସ କରି ଚାରିଧାମ ବୁଲି ଗଂଗାରେ ସ୍ନାନ କରିଦେଲେ ପୁଣ୍ୟ ଅର୍ଜନ ହୋଇଯାଏନି। ସେମିତି ହେଇଥିଲେ କେବଳ ଧନୀଲୋକମାନେ ହିଁ ପୁଣ୍ୟ କମାଉ ଥାଆନ୍ତେ।

ମିତାର ଭ୍ରାନ୍ତଧାରଣା ଦୂର କରିବା ପାଇଁ ଯମରାଜ ପ୍ରଶ୍ନ କଲେ - ତୁମେ କେବେ କୌଣସି ଅଚିହ୍ନା ଭୋକିଲା ଲୋକକୁ ନିଜ ଖାଦ୍ୟ ସମର୍ପି ଦେଇ ନିଜେ ପାଣି ପିଇ ଓଳିଏ ବିତାଇଛ ? ଶୀତରେ ଥରୁଥିବା ଅଜଣା ଲୋକକୁ ନିଜ ଶାଲଟି ଢ଼ାଙ୍କି ଦେଇ ଥରି ଥରି ଘରକୁ ଫେରିଛ ? ଖରାଦିନେ ଶୋଷିଲା ଚଢ଼େଇମାନଙ୍କ ପାଇଁ ପାଣି ରଖିଛ ବା ସଡ଼କ କଡ଼ରେ ଝାଉଁଳି ପଡ଼ିଥିବା ଚାରା ଗଛଟି ମୂଳରେ ନିଜ ପାଇଁ ଧରିଥିବା ପାଣିବୋତଲ ଖାଲି କରିଦେଇଛ ?

ଆଶ୍ଚର୍ଯ୍ୟ ହୋଇ ମିତା ପ୍ରଶ୍ନ କଲା - ମୁଁ ପୋତିନଥିବା ଗଛରେ ପାଣି କାହିଁକି ଦେବି ? ଅଜଣା ଚଢ଼େଇଙ୍କ ଶୋଷ କାହିଁକି ମେଣ୍ଟାଇବି ଏବଂ ଚିହ୍ନିନଥିବା ଲୋକଙ୍କୁ ଅନ୍ନ ବସ୍ତ୍ର କାହିଁକି ବା ଦାନ କରିବି ? ମୁଁ ନିଜେ ଭଲ ପାଠ ପଢ଼ି ମେଡ଼ିକାଲରେ ସିଟ୍ ପାଇଲି । କଷ୍ଟ କରି ପାସ୍ କଲି ଓ ପରିଶ୍ରମ କରି ଟଙ୍କା ରୋଜଗାର କଲି । ତେଣୁ ନିଜ ପାଇଁ ଖର୍ଚ୍ଚ ନକରି ଅଜଣା ଅଶୁଣା ଲୋକଙ୍କ ପାଇଁ ମୁଁ କାହିଁକି କ'ଣ ଖର୍ଚ୍ଚ କରିବାକୁ ଯିବି ? ସେମାନେ ମୋର କି ଉପକାର କରିଛନ୍ତି ?

ସ୍ଥିତପ୍ରଜ୍ଞ ଯମରାଜା କହିଲେ - ସେମାନେ ତୁମର ଯେତେ ଉପକାର କରିଛନ୍ତି ତୁମେ କଳନା କରିପାରିବନି । ତୁମେ ଜନ୍ମ ହେଲା ମାତ୍ରେ ତୁମକୁ ଅମ୍ଳଜାନ ଯୋଗାଇଥିବା ବୃକ୍ଷମାନଙ୍କୁ ତୁମେ ପୋତିନଥିଲ । ଜନ୍ମ ସମୟରେ ଯେଉଁ ଧାଈ ତୁମର ଚିକିଟା ଦେହକୁ ତେଲ ହଳଦୀ ଲଗାଇ ସଫା କରିଛନ୍ତି ତାଙ୍କୁ ତୁମେ ଜାଣିନ । ପ୍ରତ୍ୟେକ ଦିନ କିଚିରିମିଚିରି ଶବ୍ଦ କରି ତୁମକୁ କର୍ମ କରିବା ପାଇଁ ଉଠାଉଥିବା ଚଢ଼େଇମାନଙ୍କୁ ତୁମେ ଚିହ୍ନିନ । ଯେଉଁ ବିଦ୍ୟାଳୟ, ମହାବିଦ୍ୟାଳୟରେ ତୁମେ ପାଠପଢ଼ି ମଣିଷ ହେଲ ତାକୁ ତିଆରି କରିଥିବା ମୂଲିଆ, ମିସ୍ତ୍ରୀ, ବଢ଼େଇ, ରେଜାଙ୍କୁ ତୁମେ ଜାଣିନ । ଯେଉଁ ଚାଷୀର ଚାଉଳ ଖାଉଛ ଯେଉଁ ବୁଣାକାରର ବସ୍ତ୍ର ପରିଧାନ କରିଛ ଏବଂ ଆନାଟୋମୀ ହଲରେ ଯେଉଁ ଶବକୁ କାଟି ଡାକ୍ତର ହେବାର ଗୌରବ ଅର୍ଜନ କଲ ସେମାନେ ସମସ୍ତେ ତୁମର ଅଜଣା । ତୁମେ ସେ ସମସ୍ତଙ୍କଠାରେ ଋଣୀ । ତେଣୁ ସେମାନଙ୍କ ଋଣ ଶୁଝିବାର ପ୍ରୟାସ ତୁମେ କରିବା ଉଚିତ ନୁହେଁ କି ?

ମିତା ନିର୍ବାକ ହୋଇ ଯମରାଜାଙ୍କ ଆଡ଼େ ଚାହିଁ ରହିଲା । ପଚାରିବା ପାଇଁ କୌଣସି ପ୍ରଶ୍ନ ନଥିଲା କି ଉତ୍ତର ଦେବାପାଇଁ କୌଣସି ଭାଷା ନଥିଲା ।

'ନିଃସ୍ୱାର୍ଥପର ପରୋପକାର' ହିଁ ପୁଣ୍ୟର ସଂଜ୍ଞା କହି ଯମରାଜା ମିତାକୁ ମର୍ତ୍ତ୍ୟକୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ମଥାନତ କରି ମିତା କାଠଗଡ଼ାରୁ ବାହାରି କ୍ଷଣେ ସତୃଷ୍ଣ ନୟନରେ ଥରେ ସ୍ୱର୍ଗଦ୍ୱାର

ଆଡ଼େ ଚାହିଁଦେଇ ମନଦୁଃଖରେ ମର୍ତ୍ତ୍ୟର ଦ୍ୱାର ଦେଇ ଭିତରେ ପଶିଲା।

ପଛରୁ ଯମରାଜାଙ୍କ କଣ୍ଠସ୍ୱର ଶୁଭିଲା ନେକଷ୍ଟ।

ମିଂଜି ମିଂଜି ଆଲୋକରେ ପରିଷ୍କାର ଦିଶୁନଥିବା ସଡ଼କରେ କିଛି ପାହୁଣ୍ଡ ଗଲାପରେ ମିତାର ପାଦ ଏକ ଗର୍ତ୍ତରେ ପଡ଼ିଗଲା ଓ ସିଏ ଉଲ୍‌କା ସଦୃଶ କ୍ଷୀପ୍ର ଗତିରେ ମହାଶୂନ୍ୟରୁ ତଳକୁ ଖସି ଶେଷର ମାଟିରେ କଚାଡ଼ି ହୋଇ ପଡ଼ିଲା। ମିତା ବିଳିବିଳେଇ ନିଦରୁ ଉଠି ଖଟରେ ଚକମାଲି ପକାଇ ବସିପଡ଼ି କମ୍ପୁଥିବା ହାତରେ କପାଳର ସ୍ୱେଦ ବିନ୍ଦୁ ପୋଛି ପକାଇ ଭାବିଲା - ସିଏ ସ୍ୱପ୍ନ ଦେଖୁଥିଲା ନ ସତରେ ଯମପୁର ଯାଇ ଫେରିଲା ?

ମିତା ଆଖି ଖୋଲି ଦେଖିଲା ରାତିର ଅନ୍ଧକାର ସହିତ ମନର ଅନ୍ଧକାର ଅପସରି ଯାଇ ସକାଳ ହୋଇଯାଇଛି। ପାଖରେ ମିହିର ନିଘୋଡ଼ ନିଦରେ ଶୋଇଛନ୍ତି। ଶୋଇବା ଘରର ଝରକା ଦେଇ ପଡ଼ୋଶୀ ଦାସବାବୁଙ୍କ ଘର ପଟୁ ବାସନ ମଜା ହେବାର ଶବ୍ଦ ଭାସିଆସୁଛି। ତାଙ୍କ ଆୟା ବାସନ୍ତୀ ରାତି ନ ପାହୁଣୁ ଆସି ପହଞ୍ଚିଯାଏ।

ମିତାର ମନେ ପଡ଼ିଲା କାଲି ସଂଧ୍ୟାରେ ବାସନ୍ତୀ ଯେତେବେଳେ ତା ଝିଅର ବିଭାଘର ପାଇଁ ହଜାରେ ଟଙ୍କା ଉଧାର ମାଗିଥିଲା ସେତେବେଳେ ମିତା ତାକୁ ଖାଲି ହାତରେ ଫେରାଇ ଦେଇ କହିଥିଲା - ତୁମେ କ'ଣ ମୋ ଘରେ କାମ କରୁଛ ଯେ ମୁଁ ତୁମକୁ ଧାର ଦେବି ? ଯେଉଁମାନଙ୍କ ଘରେ କାମ କରୁଛ ସେମାନଙ୍କୁ ମାଗ।

ବାସନ୍ତୀ ମନଦୁଃଖରେ ଚାଲିଗଲା ଘରେ ମିତାକୁ ଖୁବ୍ ଖରାପ ଲାଗିଥିଲା ଏବଂ ସେହି କାରଣରୁ ତାକୁ ବହୁତ ରାତିଯାଏ ନିଦ ଆସିନଥିଲା।

ମିତା କାନ୍ଥ ଘଡ଼ିକୁ ଚାହିଁ ଦେଖିଲା ସାଢ଼େ ଛ'ଟା ବାଜିଲାଣି। ମିତା ତରତର ହୋଇ ଖଟରୁ ଓହ୍ଲାଇପଡ଼ି ଫିଟିଯାଇଥିବା ଚୁଟିକୁ ଗଣ୍ଠି ପକାଇ ଆଲମାରୀରୁ ହଜାରେ ଟଙ୍କାର ନୋଟ୍‌ଟିଏ କାଢ଼ି ଫାଟକ ପାଖକୁ ଯାଇ ବାସନ୍ତୀକୁ ଅପେକ୍ଷାକରି ଠିଆ ହେଲାବେଳେ ନଜର ପଡ଼ିଲା ରାସ୍ତା କଡ଼ରେ ଫୁଲ ବାସ୍ନାରେ ମହକୁଥିବା ବଉଳ ଗଛ ଓ ତା ଡାଳରେ ବସି ବୋବାଉଥିବା ଦୁଇଟି ବଣି ଚଢ଼େଇ ଉପରେ। ମିତା ଜୀବନରେ ପ୍ରଥମ ଥର ପାଇଁ ଦେଖୁଥିଲା ଭଳି ଅପଲକ ନୟନରେ ଚାହିଁରହିଲା ବଉଳଗଛ ଓ ଦୁଇବଣି ଆଡ଼େ।

ଗେଟ୍ ଖୋଲିବାର ଶବ୍ଦ ଶୁଣି ମିତା ଡାହାଣ ପଟକୁ ବୁଲି ଦେଖିଲା ବାସନ୍ତୀ ତା' ଓଦା ହାତକୁ ମଇଳା ଲୁଗାକାନିରେ ପୋଛି ପୋଛି ଦାସବାବୁଙ୍କ ଘରୁ ବାହାରୁଛି। ମିତାକୁ ଆଜି ବଉଳ ଗଛ, ବଣି ଓ ବାସନ୍ତୀ ଖୁବ ଆପଣାର ମନେହେଲେ। ମିତା ଡ଼ଗଡ଼ଗ କରି ବାସନ୍ତୀ ଆଡ଼େ ଚାଲି ଯାଉ ଯାଉ ବାଚାଳଙ୍କ ପରି ମୃଦୁ ସ୍ୱରରେ କହିଲା - ହେ ବାସନ୍ତୀ, ବଣି ଚଢ଼େଇ ଓ ବଉଳ ଗଛ, ମୋ ଅଜ୍ଞତା ପାଇଁ ମତେ କ୍ଷମା କର।

# ରୂପ

- ହାଲୋ ନମସ୍କାର ମ୍ୟାଡାମ୍ । ହଁ ମୁଁ ଡକ୍ଟର ପରିଜା କହୁଛି ।

- ହଁ ମ୍ୟାଡମ୍ ମୁଁ ଷ୍ଟେସନ୍ ଯାଇ ପୁଅକୁ ନେଇ ଆସିବି । ଆପଣ ଆଦୌ ଚିନ୍ତା କରନ୍ତୁନି ।

- ଆଜ୍ଞା, - ଆଜ୍ଞା, ମୁଁ ଷ୍ଟେସନ୍ ଯିବା ପୂର୍ବରୁ କ୍ଲବ୍ ଯାଇ ଚିଲ୍ଲି ଚିକେନ୍ ଓ ଜୁସ୍ ଆପଣଙ୍କ ଘରେ ପହଞ୍ଚାଇ ଦେବି ।

- ମ୍ୟାଡାମ୍ ମୁଁ ଜାଣିଛି କାଲି ସାର୍ ମାଡ୍ରାସ୍‌ରୁ ଫେରିବେ ।

- ନା, ନା, ହଇରାଣ କ'ଣ ? ମୋର ଆଜି ଅନ୍ୟ କିଛି କାମ ନାହିଁ ।

- ହଉ ମୁଁ ରହୁଛି । ନମସ୍କାର ମ୍ୟାଡମ୍ ।

ରିସିଭରଟାକୁ କଚାଡି ଦେଇ ଡକ୍ଟର ପରିଜା ପତ୍ନୀଙ୍କୁ କହିଲେ - ହଇହେ ଶୁଣୁଛ - ଆଜି ରାତିର ପ୍ରୋଗ୍ରାମ୍ କ୍ୟାନ୍‌ସଲ୍ କର । ଆମେ ତୁମ ଭାଇନାଙ୍କ ଘରକୁ ବୁଲିଯାଇ ପାରିବାନି ।

- କାହିଁକି ?

- ଆମ ଡାଇରେକ୍ଟରଙ୍କ ପୁଅ ବମ୍ବେରୁ ମେଲ୍‌ରେ ଆସୁଛି ଯେ ତାକୁ ରିସିଭ୍ କରିବାପାଇଁ ମତେ ଷ୍ଟେସନ୍ ଯିବାକୁ ପଡ଼ିବ । ଡାଇରେକ୍ଟରଙ୍କ ମିସେସ୍ ଏବେ ଫୋନ୍ କରିଥିଲେ ।

- ତମେ ମନା କରି ଦେଲନି ।

- ଆରେ ମନା କେମିତି କରିଥାଆନ୍ତି ? ଡାଇରେକ୍ଟରଙ୍କ ହାତରେ ପରା ମୋ ପ୍ରମୋସନର ଡୋରି ।

ମାସେ ପରେ -

- ହାଲୋ ମୁଁ ଡକ୍ଟର ପରିଜା କହୁଛି । ନମସ୍କାର

- ହଁ ସିଏ ଆମକୁ ନିମନ୍ତଣ କରିଛନ୍ତି । ଆମେ ରାତି ଆଠଟାରେ ବାହାରିବୁ ।

- ଆପଣ ବ୍ୟସ୍ତ ହୁଅନ୍ତୁନି । ଆମେ ଗଲାବେଳେ ଆପଣଙ୍କୁ ସାଙ୍ଗରେ ନେଇଯିବୁ ।

- ନା, ନା, ଜମ୍ମା ଭୁଲିବନି । ନମସ୍କାର ।

ପତ୍ନୀ ପଚାରିଲେ କାହାକୁ ସାଙ୍ଗରେ ନେବା କଥା କହୁଥିଲ ?

- ଏଇ ଆମ ଏକ୍ସ ଡାଇରେକ୍ଟରଙ୍କ ସ୍ତ୍ରୀ । ଆମ ସାଂଗେ ବ୍ରାହ୍ମଣୀ କ୍ଲବ୍ ଯିବ ବୋଲି ଫୋନ୍ କରିଥିଲା । ଡାଇରେକ୍ଟର ବୁଢ଼ା ତ ବଦଳି ହେଇ ଯାଇ ବୋକାରୋରେ । ଏଠିକୁ ଫେରିବାର ବି ନାହଁ । ବୁଢ଼ୀକୁ ତେଲ ମାରି ଲାଭ କ'ଣ ?

- ତାହାଲେ ଗଲାବେଳେ ତାଙ୍କୁ ସାଙ୍ଗରେ ନେବାନି ?

- ନା

- ପଚାରିଲେ କ'ଣ କହିବ ?

- କହିବ ଅଚାନକ ଆମର ଗେଷ୍ଟ ଆସିଯିବାରୁ କ୍ଲବ୍ ଯିବାଟା ବାତିଲ କରିଦେଲୁ ।

# ପିତା

ଆଉଟ୍‌ଡୋର ଭିଡଟା ଟିକେ କମିଯିବାରୁ ଡାକ୍ତର ରିତା ମିଶ୍ର ହାତ ଘଡ଼ିକୁ ଚାହିଁ ଦେଖିଲେ ସାଢ଼େ ଦଶଟା ବାଜିଲାଣି । ତାଙ୍କ ପାଖରେ କାମ କରୁଥିବା ଆୟା କ୍ୟାଣ୍ଟିନ୍‌ରୁ କଫି ଆଣି କେତେବେଳରୁ ରଖି ସାରିଲାଣି ।

ପ୍ରତ୍ୟେକଦିନ ସକାଳ ଆଠଟାରୁ ଅବିଶ୍ରାନ୍ତ ରୋଗୀ ଦେଖି ଦେଖି କ୍ଲାନ୍ତ ହୋଇଯାଉଥିବା ରିତା ପ୍ରାୟ ଏହି ସମୟରେ ବାମ୍ପ ଉଠା କଫି ପିଇ ତାଜା ହୋଇ ପୁଣି ଦ୍ୱିତୀୟ ପର୍ଯ୍ୟାୟର ରୋଗୀମାନଙ୍କୁ ବାରଟା ଯାଏ ଦେଖିବାପାଇଁ ପ୍ରସ୍ତୁତ ହୋଇଯାଆନ୍ତି ।

ରୋଗୀ ନଥିବାର ସୁଯୋଗକୁ ହାତଛଡା ନକରି ଆୟା ଆଶା ଭିତର ପଟରୁ କବାଟଟି ବନ୍ଦକରି ଦେବା ମାତ୍ରେ ରିତା ବେକରୁ ଷ୍ଟେଥୋ ଓ ହାତରୁ ପେନ୍‌ଟି ଟେବୁଲ ଉପରେ ରଖିଦେଇ ସଂଲଗ୍ନ ଟଏଲେଟ୍ ଆଡ଼େ ମୁହାଁଇଥିଲେ ।

ଟଏଲେଟ୍‌ରୁ ଫେରି ନିଜ ଚୌକିରେ ବସିବା ମାତ୍ରେ ଆଶା ଫ୍ଲାସ୍କରୁ ଗରମ କଫି ଢ଼ାଳି ରିତାଙ୍କ ସାମନାରେ ରଖିଥିଲା ।

କଫି କପ୍‌ରେ ଓଠ ଛୁଆଁଇ ଡାକ୍ତର ରିତା ଭାବିଲେ କିଟୁ ଏ ଭିତରେ ଉଠି ଜଳଖିଆ ଖାଇସାରିବଣି ।

ଆଜି ପାହାନ୍ତାରେ ଭୁବନେଶ୍ୱରରେ ଦ୍ୱିତୀୟ ବର୍ଷ ଇଞ୍ଜିନିୟରିଂ ପଢୁଥିବା ପୁଅ କିଟୁ ଆସି ଘରେ ପହଞ୍ଚିଛି । ଆଜି ରାକ୍ଷୀ ପୂର୍ଣ୍ଣିମା ପାଇଁ ଓ ଆସନ୍ତା କାଲି ରବିବାର ଥିବାରୁ ସିଏ ରାଉରକେଲା ଆସିଛି ।

କିଟୁ ହଷ୍ଟେଲରୁ ଘରକୁ ଆସିଲେ ରିତା ପ୍ରାୟ ଛୁଟି ନେଇଯାଆନ୍ତି । ଆଜି ମଧ୍ୟ ଛୁଟି ନେବେ ବୋଲି ଇଚ୍ଛା କରିଥିଲେ କିନ୍ତୁ ତାଙ୍କ ବିଭାଗରେ ଅନ୍ୟ ଦୁଇଜଣ ଡାକ୍ତର ଲମ୍ୱା ଛୁଟିରେ ଯାଇଥିବାରୁ ତାଙ୍କୁ ବାଧ୍ୟ ହୋଇ ହସ୍‌ପିଟାଲ ଆସିବାକୁ ପଡ଼ିଲା ।

କିଟୁ ଭୋରରେ ଘରେ ପହଞ୍ଚି ମା'ଙ୍କର ଡିଉଟି ଯିବାକଥା ଜାଣିଲାପରେ ରିଚାଙ୍କୁ କହିଥିଲା - ମୁଁ ରାତି ଅନିଦ୍ରା ହେଇ ଆସିଛି ତେଣୁ ଏବେ ଶୋଇପଡୁଛି । ପରେ ଜଳଖିଆ ଖାଇବି ।

ସାଂଗରେ ଆଣିଥିବା ଏୟାର ବ୍ୟାଗଟିକୁ ଉଠାଇ ନିଜ ବଖରାରେ ରଖି ଦାନ୍ତ ଘଷୁ ଘଷୁ ସେହିଠାରୁ ଉଚ୍ଚସ୍ୱରରେ ମା' ଉଦ୍ଦେଶ୍ୟରେ କହିଥିଲେ- ମୋ ପାଇଁ ଆଲୁଚପ୍ କରି ରଖିଯାଇଥିବ । ମୁଁ ଉଠିଲେ ଖାଇବି ।

ବାପ ପୁଅଙ୍କର ଆଲୁଚପ୍ ଭାରି ପ୍ରିୟ ସେଥିପାଇଁ କିଟୁ ଘରେ ଥିଲାବେଳେ ରିଚା ପ୍ରତି ସପ୍ତାହରେ ଥରେ ଦୁଇଥର ଆଲୁରେ ବାଦାମ ମଂଜି ଓ ନଡିଆ ପାତି ପକାଇ ଆଲୁଚପ୍ ଛାଣୁଥିଲେ । ବର୍ଷେ ହେଲାଣି ରଂଜିତଙ୍କର ଡାଏବେଟିସ ବାହାରିବା ପରଠୁ ରିଚା ଆଲୁଚପ୍ ଛାଣିବାଟା କମ୍ କରିଦେଇଛନ୍ତି । ଆଜିକାଲି କିଟୁ ଆସିଲେ ଛଣା ହୁଏ ।

କିଟୁ ଆଜି ଆସିବ ଜାଣି ରିଚା କାଲିଠାରୁ ଆଳୁ ସିଝାଇ ଫ୍ରିଜରେ ରଖିଥିଲେ ।

କିଟୁ ବରାଦ କରିବା ମାତ୍ରେ ରିଚା ଛଅଟା ଆଲୁଚପ ଛାଣି ଖୁବ ଯତ୍ନ ସହକାରେ ପେପର ନାପ୍‌କିନ୍ ଦେଇ ହଟ୍ କେସ୍‌ରେ ରଖି ପୁଅ ବଖରାର ପଢ଼ା ଟେବୁଲ ଉପରେ ରଖିଥିଲେ । ପାଖରେ ପ୍ଲେଟ, ପାଣି ବୋତଲ ଓ ଟମାଟୋ ସସ୍ ରଖି ଭାବିଥିଲେ କିଟୁ ଆଖି ଖୋଲିଲା ମାତ୍ରେ ଦେଖିପାରି ଖାଇବ ।

ତା'ପରେ ରିଚା ରୋଷେଇ ଘରକୁ ଆସି ରୁଟି ଓ ଫୁଲକୋବି ଭଜାକରି ରଂଜନଙ୍କ ପାଇଁ ହଟ୍‌କେସ୍‌ରେ ସଜାଡ଼ି ସବୁଦିନ ପରି ଡାଇନିଂ ଟେବୁଲ ଉପରେ ରଖି ନିଜେ ପଟେ ରୁଟି, ଭଜା ଲଗେଇ ଖାଇଦେଇ ପ୍ରସ୍ତୁତ ହେଇ ଘରୁ ବାହାରିବା ବେଳେ କିଟୁ ରୁମ୍‌ର କବାଟ ଟି ଆଉଜାଇ ଗାଧୁଆ ଘରେ ଥିବା ରଂଜନଙ୍କୁ ବଡପାଟିରେ ମୁଁ ହସ୍‌ପିଟାଲ ଯାଉଛି କହି ଘରୁ ବାହାରିଥିଲେ । ଆଜି ଘରେ କାମ କରୁଥିବା ଆୟା ଆସିନଥିବାରୁ ରିଚାଙ୍କୁ ତରତରରେ ସବୁକାମ କରିବାକୁ ପଡିଥିଲା ।

ରିଚା ଗରମ କଫିର ଦ୍ୱିତୀୟ ଢୋକ ପିଇଲା ବେଳକୁ ଟେବୁଲ ଉପରେ ଥୁଆହୋଇଥିବା ତାଙ୍କ ଭ୍ୟାନିଟି ବ୍ୟାଗ ଭିତରୁ ମୋବାଇଲଟି ବାଜି ଉଠିଲା ଏବଂ ମୋବାଇଲର ସଙ୍ଗୀତ ଲହରୀରୁ ସିଏ ଜାଣିପାରିଲେ କିଟୁ ତା ମୋବାଇଲରୁ ଫୋନ୍ କରିଛି ।

ସିଏ ନିଶ୍ଚେ ଆଲୁଚପ୍ ଖାଇସାରି ଖୁସି ହେଇ ମା' ପାଖକୁ ଫୋନ୍ କରିଛି ଭାବି ରିଚା କଫି କପ୍‌ଟିକୁ ଟେବୁଲ ଉପରେ ରଖିଦେଇ ବ୍ୟାଗ୍ ଭିତରୁ ମୋବାଇଲ କାଢି ଅନ୍‌କରି ପଚାରି ବସିଲେ-କିଟୁ ବାବା ଆଲୁଚପ ଖାଇଲୁ ତ ?

ସେପଟୁ କିଟୁ ଅଭିଯୋଗ କରି କହିଲା- ତୁମେ ଖାଲି ହଟ୍‌କେସ୍‌ଟା ମୋ ପଢ଼ା ଟେବୁଲ ଉପରେ ରଖିକି କାହିଁକି ଯାଇଛ ?

ରିମା ବ୍ୟସ୍ତ ହେଇ କହିଲେ-ତୁ ଠିକ୍‌ରେ ଦେଖ ବାବା- ମୁଁ ତୋ ପାଇଁ ସେଥିରେ ଆଳୁଚପ୍ ରଖିକି ଆସିଥିଲି ଦେଖିଲୁ ପାଖରେ ପ୍ଲେଟ୍ ଅଛି କି ନାହିଁ ?

- ନା ପ୍ଲେଟ ପ୍ଲେଟ କିଛି ନାହିଁ ।

- ଆଚ୍ଛା ଦେଖିଲୁ ଟେବୁଲ ଉପରେ ହଟ୍‌କେଶ ଅଛିକି ?

- ରୁହ ଦେଖୁଛି କହି କିଟୁ ପୁଣି କହିଥିଲା - ହଁ ଅଛି । ରିଚା ଆଶ୍ୱସ୍ତ ହେଲେ । ରଂଜନ ନିଶ୍ଚେ ନିଜ ହଟ୍‌କେସଟା ଆଣି ଶୋଇଥିବା ପୁଅ ପାଖରେ ବସି ଜଳଖିଆ ଖାଇଛନ୍ତି ଏବଂ ଗଲାବେଳେ ଅଇଁଠା ପ୍ଲେଟ ସାଂଗରେ ଭୁଲବଶତଃ କିଟୁର ଭରା ହଟ୍‌କେସଟି ନେଇ ଡାଇନିଂ ଟେବୁଲ ଉପରେ ରଖି ଅଫିସ ଚାଲି ଯାଇଛନ୍ତି ।

ରିଚା ଏପଟୁ ନିର୍ଦ୍ଦେଶ ଦେଲେ- ହଉ ସେଥିରେ ତୋ ଆଳୁଚପ ଅଛି- ଖାଇଦେ- ଡେରିହେଲାଣି ।

କିଟୁ ସେ ପଟୁ ଚିଡି ଉଠି କହିଲା- ମା' ଏଥିରେ ରୁଟି ଓ ଫୁଲକୋବି ଭଜା ଅଛି- ମୁଁ ଖାଇବିନି- ମତେ ଆଳୁଚପ ଦରକାର ।

ରଂଜନ ତାହେଲେ ଜାଣିଶୁଣି କିଟୁର ଆଳୁଚପ୍ ତକ ଗର୍ଭସ୍ଥ କରିଛନ୍ତି ବୁଝିପାରି ଅଗ୍ନିଶର୍ମା ହେଉଥିବା ମନକୁ ଅଙ୍କୁଶ ଲଗାଇ ପୁଅକୁ ସାନ୍ତ୍ୱନା ଦେଇ କହିଲେ- ହଉ ବାବା ରାଗେନା । ଫ୍ରିଜ୍‌ରେ ରସଗୋଲା ଓ କେକ୍ ଅଛି ତୁ ଖାଇଦେଇଥା । ମୁଁ ଫ୍ରିଜରେ ଆଳୁ ପୁର ରଖିଛି । ଏଠାରୁ ଯିବାମାତ୍ରେ ଆଳୁଚପ ଛାଣିଦେବି ତୁ ଖାଇବୁ ।

କିଟୁ ଫୋନ୍ ଡିସକନେକ୍ଟ କଲା ।

ରିଚା ଫୋନ୍ ଲାଗାଇଲେ ରଂଜନଙ୍କୁ ଜେରା କଲେ- ତୁମେ ଆଜି କିଟୁ ପଢା ଟେବୁଲ ଉପରେ ଥିବା ହଟକେସ୍‌ର ଆଳୁଚପ୍‌ତକ ଖାଇଛ ?

ହାଲ୍‌କା ଗଳାରେ କହିଲେ- ହଁ ଖାଇଛି । କାହିଁକି କଣ ହେଲାକି ?

- ସେଇଟା ମୁଁ କିଟୁ ପାଇଁ ରଖିଥିଲି । ତୁମ ଜଳଖିଆ ଡାଇନିଂ ଟେବୁଲରେ ଥିଲା ।

- ଏଥିରେ ଏତେ ବ୍ୟସ୍ତ ହେଇ ଫୋନ୍ କରିବାର କଣ ଅଛ ? ତାକୁ କହିଦିଅ ମୋ ପାଇଁ ରଖିଥିବା ଆଳୁଚପ ସିଏ ଖାଇଦେବ ।

ଚିଡିଯାଇ ରିଚା କହିଥିଲା- ଓହୋ । ତୁମ ପାଇଁ ଆଜି ମୁଁ ରୁଟି ଓ ଫୁଲକୋବି ଭଜା କରିଥିଲି । ରଂଜନ ସେପଟୁ କହିଲେ- ମୁଁ କେମିତି ଜାଣିବି ତୁମେ ଆଜି ଅଲଗା ଅଲଗା

ଟିଫିନ କରିଛ ବୋଲି । ସବୁଦିନ ତ ଗୋଟେ ପ୍ରକାର କଲା ବେଳକୁ ତୁମେ କୁହ ସମୟ ହେଉନି ।

ତାପରେ ସଫେଇ ଦେଲା ପରି କହିଲେ- ମୁଁ ଗାଧୋଇସାରି କିଟୁ କଣ କରୁଛି ଦେଖିବା ପାଇଁ ତା ରୁମ୍‌କୁ ଗଲାବେଳେ ସେଠି ହଟ୍‌କେସ ଦେଖି ଜଳଖିଆ ଖିଆ କମଟା ସାରି ଦେଲି ।

ଦୁଃଖଭରା ଗଳାରେ ରିଚା କହିଲେ- ଛ'ଟା ଯାକ କେମିତି ଖାଇଦେଲ ? ପିଲାଟି ପାଇଁ ଗୋଟେ ବି ରଖିଲନି ।

ଆହତ ସ୍ୱରରେ ରଂଜନ କହିଲେ- ରଖିଯାଇଥିବା ଜଳଖିଆ ପୂରା ନ ଖାଇ ବଳେଇଲେ ତୁମେ ବିରକ୍ତ ହୁଅବୋଲି ଆଜି ମୁଁ ହଟକେସଟି ଖାଲି କଲାବେଳେ ଭାବିଥିଲି ଯାହାହେଉ ତୁମେ ଆଜି ଖୁସି ହେବ । କିନ୍ତୁ ଛାଡ଼, ତୁମକୁ ଖୁସି କରାଇବା ମୋ ଭାଗ୍ୟରେ ନାହିଁ ।

ଏହାର ଉତ୍ତର କଣ ଦେବେ ଜାଣିପାରି ରିଚା ଫୋନ୍ ଅଫ କଲେ ।

ଡାକ୍ତର ରିଚା ମିଶ୍ର ଦୁଃଖରେ ହସି ପକାଇଲେ । ପୁଅ ପାଇଁ ରଖିଥିବା ଆଳୁଚପ ସବୁ ଡାଏବେଟିକ୍ ରଂଜନ ଖାଇଦେଲେ- ଆଉ ସେଇଥିପାଇଁ ରିଚା କୁଆଡ଼େ ଖୁସି ହେଇଯିବେ । ଯେମିତି ଚଉଦ ପନ୍ଦର ବର୍ଷ ପୂର୍ବେ ସିଏ କିଟୁକୁ ବର୍ଣ୍ଣଭିଟା ଗ୍ଲାସେ ପିଆଇ ଦେଇଥିଲେ ବୋଲି ଖୁସିରେ ଫାଟିପଡିଲେ ରିଚା ।

ସେତେବେଳେ କିଟୁ ମାତ୍ର ତିନିବର୍ଷର ହେଇଥାଏ । ସେ ରାତିରେ ରିଚାଙ୍କର ସି ସିଫଟ୍ ଥାଏ । ଅଚାନକ ଅତିଥି ଆସି ପହଞ୍ଚିଥିଲେ ଏବଂ ସେମାନେ ବିଦାୟ ନେଉ ନେଉ ରାତି ନ' ହେଇଯାଇଥିଲା ।

ସେଇ କମ୍ ସମୟ ଭିତରେ ସମସ୍ତଙ୍କର ଖାଇବା କାମ ସରେଇ ବଳକା ଜିନିଷକୁ ଫ୍ରିଜରେ ରଖି ନିଜେ ତିଆରି ହେବାପାଇଁ ସମୟ ଅଭାବ ହେବାରୁ ରିଚା ଗ୍ଲାସେ ଉଷୁମ କ୍ଷୀରରେ ବର୍ଣ୍ଣଭିଟା ଦୁଇ ଚାମଚ ଗୋଳେଇ ରଂଜନଙ୍କ ହାତରେ ଧରେଇ ଦେଇ ଅନୁରୋଧ କରିଥିଲେ କିଟୁକୁ ପିଆଇ ଦେବାଲାଗି । ସବୁଦିନ ଏଇ କ୍ଷୀର ପିଆଇବା କାମଟି ରିଚାଙ୍କରହିଁ । ରିଚା ଶାଢୀ ପିନ୍ଧି ଡାକ୍ତରଖାନା ଯିବା ଲାଗି ପ୍ରସ୍ତୁତ ହେଲାବେଳକୁ କିଟୁ ଆସି ମା'କୁ ଖାଲି ଗ୍ଲାସଟି ଦେଖାଇଥିଲା ।

ରିଚା ଖୁସି ତଥା ଚକିତ ହେଇ କିଟୁକୁ କହିଥିଲେ- ଆରେ ବାଃ ! ଆଜି କଣ ପାଞ୍ଚ ମିନିଟ୍‌ରେ କ୍ଷୀର ପିଇ ଦେଲୁ । ମୁଁ ପିଆଇଲା ବେଳେ ତୁ ମତେ କେତେ ହଇରାଣ କରି ଅଧଘଣ୍ଟା ସମୟ ଲଗାଉ ।

ରିଚା କିଟୁକୁ ତାଗିଦ୍ କରି କହିଥିଲେ- କାଲିଠାରୁ ପାପା ତତେ ଖିର ପିଆଇବେ ।

ତୁ ମୋ କଥା ଜମା ମାନୁନୁ କିନ୍ତୁ ପାପାଙ୍କ କଥା ତ ବଢ଼ିଆ ମାନୁଛୁ ।

- ପାପା ବି ମୋ କଥା ମାନୁଛନ୍ତି- ତେଇଁ ତେଇଁ କହିଥିଲା କିଟୁ ।

- ପାପା ତୋ କଥା କଣ ମାନୁଛନ୍ତି ମୁଁ ଟିକେ ଶୁଣେ- ପଚାରିଥିଲେ ରିଚା ।

- ପାପା ମୋ କଥା ମାନି ଢୋକେ ପିଇଲେ ମୁଁ ପାପାଙ୍କ କଥା ମାନି ଢୋକେ ପିଇଲି । ଏମିତି ସିଏ ଢୋକେ ମୁଁ ଢୋକେ ପିଉ ପିଉ ଖିର ସରିଗଲା ହାତ ହଲେଇ କହିଥିଲା କିଟୁ ।

ରିଚାଙ୍କ ପାଟିରୁ ବାହାରି ପଡିଥିଲା ଏଁ ?

ରିଚା ଆଖି ତରାଟି ମନେ ମନେ ହିସାବ କରିଥିଲେ ରଂଜନଙ୍କର ଗୋଟେ ଢୋକ କିଟୁର ଚାରି ଢୋକ ସାଂଗେ ସମାନ । ତା ମାନେ ଅଶି ଭାଗ ଖିର ରଂଜନ ପିଇଛନ୍ତି !

ରିଚା ଡିଉଟି ଯିବା ପାଇଁ ସମୟ ହେଇଯାଇ ଥିବା କଥା ଭୁଲିଯାଇ ତମ୍‌ତମ୍ ହେଇ ରଂଜନଙ୍କ ଶୟନ କକ୍ଷକୁ ଯାଇ ସିଏ ଦେଖୁଥିବା ଟିଭିଟାକୁ ବନ୍ଦକରି ଦେଇ ଅଣ୍ଟାରେ ହାତ ଦେଇ ତାଙ୍କ ସାମନାରେ ଠିଆ ହେଇପଡି କହିଥିଲେ-ବାଃ, କିଟୁକୁ ତ ଭଲ କ୍ଷୀର ପିଆଇଲ । ତୁମର ଢୋକେକୁ ତା'ର ଢୋକେ ! କି ବାପ ହେଇଛ କେଜାଣି ?

ରଂଜନ ହସିଦେଇ ଖଟରୁ ଉଠିପଡ଼ି ରିଚାଙ୍କ ପିଠିରେ ହାତ ବୁଲାଇ କହିଥିଲେ- କାହିଁକି ରାଗୁଛ ? ସବୁ ଖିର ତୁମ ପୁଅ ପିଇଛି । ମୁଁ ଖାଲି ମିଛରେ ତା ଗ୍ଲାସରେ ଓଠ ଛୁଆଁଉଥିଲି ।

ରିଚା ଦୂରକୁ ଘୁଞ୍ଚିଯାଇ ଅବିଶ୍ୱାସଭରା ଆଖିରେ ରଂଜନଙ୍କ ମୁହଁକୁ ଚାହିଥିଲେ । ସେହିଦିନ ଠାରୁ ଯେତେ ଅସୁବିଧା ହେଲେ ମଧ୍ୟ କିଟୁର ଖାଇବା ଦାୟିତ୍ୱ ରଂଜନଙ୍କୁ ଦେଇନଥିଲେ ।

ଆଉଟ୍‌ଡୋରର ବନ୍ଦ କବାଟରେ କୌଣସି ଅଧୈର୍ଯ୍ୟ ରୋଗୀର କରାଘାତ ଯୋଗୁ ଅନ୍ୟମନସ୍କ ହେଇପଡିଥିବା ରିଚା ଉଷୁମ କଫିକୁ ଢକଢକ କରି ପିଇଦେଇ ଦରଜା ଖୋଲିଦେବା ପାଇଁ ଆୟାକୁ ନିର୍ଦ୍ଦେଶ ଦେଲେ ।

କବାଟ ଖୋଲିଦେବା ମାତ୍ରେ ତିରିଶ ବତିଶ ବୟସର ଅସୁସ୍ଥ ଦିଶୁଥିବା ସ୍ତ୍ରୀଲୋକ ଜଣେ ଭିତରକୁ ପଶି ଆସିଲେ ଓ ତାଙ୍କ ସାଥିରେ ସାତ ଆଠ ବର୍ଷ ପୁଅଟିଏ । ରିଚାଙ୍କ ପାଖରେ ରୋଗୀ ମାନଙ୍କ ପାଇଁ ଉଦ୍ଦିଷ୍ଟ ଷ୍ଟୁଲରେ ଭଦ୍ରମହିଳା ବସିପଡ଼ି ପୁଅକୁ କୋଳେଇ ନେଇ ରିଚାଙ୍କ ଆଡେ ଚାହିଁ ଗୋଟିଏ ନିଃଶ୍ୱାସରେ କହିଲେ-ଏବେ ଭାତ ଖାଉଥିଲାବେଳେ ମୋ ପୁଅ ତଣ୍ଡିରେ ଗୋଟେ ମାଛ କଣ୍ଟା ଲାଗିଯାଇଛି । ସିଏ କିଛି ଢୋକି ପାରୁନି । ତାକୁ ବହୁତ କଷ୍ଟ ହେଉଛି । ସେ କଣ୍ଟା କଢା ହେଇ ପାରିବତ ?

ଏହି ସମୟରେ ଭଦ୍ରବ୍ୟକ୍ତି ଜଣେ ଆଉଜା କବାଟ ଠେଲି ଭିତରକୁ ଆସି ଭଦ୍ରମହିଳାଙ୍କ ପଛରେ ଠିଆ ହେଲେ, ବୋଧହୁଏ ସିଏ ତାଙ୍କ ସ୍ୱାମୀ ।

ରିତା ଆଶାକୁ ଟର୍ଚ୍ଚ ଓ ଟଙ୍ଗ୍ ଡିପ୍ରେସର ଆଣିବାକୁ କହିଲେ ।

ରିତା କିଛି ନ ପଚାରିଥିଲେ ମଧ୍ୟ ସେ ଭଦ୍ର ମହିଳା ରିତାଙ୍କ ଆଡେ ଅନାଇ ନିରବଛିନ୍ନ ଭାବେ କହିଚାଲିଲେ - ଆଜି କେମିତି ହଠାତ୍ ତାଙ୍କ ମୁଣ୍ଡ ଘୂରାଇ ବାନ୍ତି ହେବାରୁ ସିଏ ପୁଅକୁ ନ ଖୁଆଇ ପାରି ସ୍ୱାମୀଙ୍କୁ ପୁଅର ମାଛରୁ କଣ୍ଟାଟିକେ ବାଛିବାକୁ କହିଥିଲେ । ଜୀବନରେ ପ୍ରଥମ ଥର ପାଇଁ କରୁଥିବା ଅତି ସାଧାରଣ କାମଟି ବି ଠିକ୍‌ରେ ସିଏ କେମିତି କରିପାରିଲେନି ଓ ପୁଅ ତଣ୍ଟିରେ ମାଛ କଣ୍ଟା ଲାଗିଗଲା ।

ମା' କଥା ଶୁଣି କୋଳରେ ବସିଥିବା ବାଳୁତ ପୁଅଟି କହିଲା - ମାମା ମୁଁ କହୁଚି କଣ୍ଟା ଅଛି ଆଉ ପାପା କହିଲେ ମୁଁ ବାଛିକି ଦେଇଛି ତୁ ଢୋକିଦେ । ସେତେବେଳେ ମୁଁ ଥୁ କହିଦେଇଥିଲେ କିଛି ହେଇ ନଥାଆନ୍ତା ।

ପୁଅ କଥା ଶୁଣି ପଛରେ ଠିଆହେଇଥିବା ଭଦ୍ରଲୋକ ଚିଡି ଉଠି ପୁଅକୁ ଧମକାଇ କହିଲେ- ଓଃ ମା' ଭଳିଆ କେତେ ବକର ବକର ହେଉଚୁ । ଚୁପ୍ ହେଇ ବସ. ତୋପାଇଁ ଆଜି ମୋର ଅଫିସ ଡେରି ହେଲାଣି ।

ସ୍ୱାମୀଙ୍କ କଥାରେ କାନ୍ଦକାନ୍ଦ ହେଇ ଭଦ୍ରମହିଳା ରିତାଙ୍କ ଆଡେ ଚାହିଁ କହିଲେ ମ୍ୟାଡାମ୍ ଦେଖିଲେ, ମୋ· ପୁଅଗଳାରେ ମାଛକଣ୍ଟା ଲାଗିଯାଇଛି ତାଙ୍କର କିଛି ଚିନ୍ତା ନାହିଁ ଅଥଚ ଦିନଟେ ଅଫିସ ଯିବାରେ ଟିକେ ଡେରିଗଲା ବୋଲି କେତେ କଥା ଶୁଣାଉଛନ୍ତି ।

ରିତା ଗମ୍ଭୀର ହୋଇ ଭଦ୍ରଲୋକଙ୍କ ଆଡ଼େ କ୍ଷଣେ ଚାହିଁଦେଇ ପିଲାଟିକୁ ପାଟି ଖୋଲିବାକୁ କହି ଟଙ୍ଗ ଡିପ୍ରେସରରେ ଜିଭକୁ ଦାବି ଟର୍ଚ୍ଚ ଜଳାଇ ଦେଖିଲେ ମୁଖ ଗହ୍ୱରର ପଶ୍ଚାତ୍ ଭାଗରେ ପଶିଯାଇଥିବା ସରୁ କଣ୍ଟାଟିର ଅଗ୍ରଭାଗ ଦିଶୁଛି ।

ଫୋରସେପ୍‌ରେ ମାଛ କଣ୍ଟାଟିକୁ ବାହାର କରି ତା ମା'ର ପାପୁଲି ଉପରେ ରଖିଦେଇ ଡାକ୍ତର ରିତା କହିଲେ - ମୁଁ ତୁମକୁ ସତର୍କ କରାଇଦେଉଛି ଭବିଷ୍ୟତରେ ତୁମ ପୁଅର କୌଣସି କାମ ତା ଦାୟିତ୍ୱହୀନ ବାପାଙ୍କୁ କରିବାକୁ ଦେବନାହିଁ ।

ବିଚରା ଭଦ୍ରଲୋକ ଡାକ୍ତର ରିତା ତାଙ୍କ ଉପରେ ଏତେ ଅସନ୍ତୁଷ୍ଟ ହେବାର କାରଣଟା ଜାଣିନପାରି ବୋକା ଭଳି ଅନେଇ ରହିଲେ ।

# ପ୍ରଶ୍ନବାଚୀ

ଅପରାହ୍ନ ଚାରିଟାବେଳେ ଅମରେନ୍ଦ୍ରଙ୍କ ରବିବାରର ଦୁଇ ପହରିଆ ଗାଢ଼ ନିଦଟା ଭଙ୍ଗିଯାଇଥିଲା । ସିଏ ଖଟରେ ଗଡପଡ ହେଉ ହେଉ ବୈଠକ ଘରୁ ଆସୁଥିବା ଗୁଂଜନରୁ ତାଙ୍କର ମନେ ପଡିଲା ଆଜି ପତ୍ନୀ ଅନିମା ତାଙ୍କ ବାନ୍ଧବୀମାନଙ୍କୁ ଚା ପାଇଁ ନିମନ୍ତ୍ରଣ କରିଛନ୍ତି ଓ ସେଥିପାଇଁ ଏ କୋଳାହଳ ।

ହାଠତ୍ ବିଜୁଳି ଚାଲିଯିବାରୁ ଫ୍ୟାନ୍ ସବୁ ନିଃଶବ୍ଦ ହୋଇଗଲେ ଏବଂ ବୈଠକ ଘରର ଅସ୍ପଷ୍ଟ ଗୁଂଜରଣ ସୁସ୍ପଷ୍ଟ ହୋଇଉଠିଲା ।

ଜଣେ ନାରୀଙ୍କ କଣ୍ଠସ୍ୱର - ଆପଣମାନେ ବିଶ୍ୱାସ କରିପାରିବେନି ଏ ବୟସରେ ବି ମୋ ଶାଶୁ ଚାରିଓଳା ଚାରିବକ୍ତ ଯେମିତି ଖାଇ ହଜମ କରନ୍ତି । ଅଥଚ ତାଙ୍କରି ବୟସର ମୋ ମା ସାରା ଦିନରେ ଚାରିପଟ ରୁଟି ଓ ମାତ୍ର ଦୁଇଗିନା ସନ୍ତୁଳା ଖାଇଥାଏ । କେବେ କେମିତି ଅଧିକ ଟିକେ ଖାଇଦେଲେ ତାର ବ୍ଲଡ୍ ସୁଗାର ବଢ଼ିଯାଏ ।

ବିରକ୍ତିମିଶ୍ରିତ ସ୍ୱରରେ ଆରମ୍ଭ ହୋଇଥିବା ତାଙ୍କ କଥାଗୁଡ଼ିକ ଶେଷବେଳକୁ କେମିତି ଦୁଃଖୀ ଦୁଃଖୀ ମନେ ହୋଇଥିଲା ।

ଅନ୍ୟ ଏକ ଭଦ୍ର ମହିଳା କହିଲେ - ଆମ ଘରେ ମୋ ଭାଉଜ ଚାକିରି କରୁଥିବାରୁ ସିଏ ସକାଳ ନଅଟାରୁ ଯାଇ ସଂଧ୍ୟା ଛ'ଟାରେ ଘରକୁ ଫେରନ୍ତି । ତେଣୁ ଘର ସାରାର କାମ ମୋ ବୋଉ ଲୋଟଣୀ ପାରା ଭଳି କରିଥାଏ, ରୋଷେଇଠୁ ଆରମ୍ଭ କରି ନାତି, ନାତୁଣୀଙ୍କୁ ସମ୍ଭାଳିବା ଯାଏ । ମୋ ବୋଉ ଠାରୁ ଯଥେଷ୍ଟ ସାନ ମୋ ଶାଶୁ ଏଠି କୁଟା ଖଣ୍ଡିକ ଦିଖଣ୍ଡ କରିନ୍ତିନି । ସକାଳେ ପେଷ୍ଟ ଲଗା ବ୍ରସ୍ ତାଙ୍କ ହାତକୁ ବଢ଼ାଇବା ଠାରୁ ଆରମ୍ଭ କରି ରାତିରେ ତାଙ୍କ ମଶାରି ଟାଙ୍ଗିବା ଯାଏ ସବୁ କାମ ମୁଁ କରେ । ତେବେ ବି ଦିନେ ସିଏ ମୋ ଉପରେ ସନ୍ତୁଷ୍ଟ ହେବାର ମୁଁ ଦେଖିନି ।

ବ୍ୟଙ୍ଗମିଶା ସ୍ୱରରେ ଆଉ ଜଣେ କହିଲେ - ମୁଁ ବାହା ହେଇ ଶାଶୁ ଘରକୁ ଆସିଲାଦିନରୁ ଶାଶୁଙ୍କ ମୁହଁରୁ ଶୁଣି ଆସୁଛି ତାଙ୍କ ଆୟୁଷ ସରିଆସିଲାଣି । ଆଜିକାଲି ଭିତରେ ତାଙ୍କ ପ୍ରାଣବାୟୁ ଉଡିଯିବ । ଦେଖିଲା ବେଳକୁ ସିଏ ଯେମିତିକୁ ସେମିତି ବସିଛନ୍ତି । ଆଉ ତାଙ୍କରି ଆଗରେ ମୋ ଜେଜେମା, ବାପା, ବୋଉ ସମସ୍ତେ ଜଣ ଜଣ କରି ଆରପାରିକୁ ଯାଇସାରିଲେଣି ।

ଏହାପରେ ପତ୍ନୀ ଅନିମାଙ୍କ ସତର୍କତା ମୂଳକ ଅନୁଚ୍ଚ ସ୍ୱର ଶୁଣି ଗଡପଡ ହେଉଥିବା ଅମରେନ୍ଦ୍ର ଉଠିପଡି ଶେଯରେ ଚକାମାଡି ପକାଇ ବସିଯାଇ କାନେଇଲେ ।

- ମୋର ଡାକ୍ତର ମା ମତେ ଗାଡିଚଲାରୁ ଘୋଡାଚଢ଼ା ଯାଏ କ'ଣ ନଶିଖାଇଛନ୍ତି ? ଶାଶୁ କିନ୍ତୁ ସବୁ କଥାରେ ତାଙ୍କ ଝିଅର ଉଦାହରଣ ଦେଇ କୁହନ୍ତି ସିଏ କୁଆଡେ ଘରକରଣାରେ ପାରଙ୍ଗମ । ମୋ ମା' ମତେ କିଛି ବି ଶିଖାଇନି ଆଉ ଖାସ ସେଇଥିପାଇଁ ମୁଁ କୁଆଡ଼େ ଘରର ଏତିକି କାମ କରୁ କରୁ ହାଲିଆ ହୋଇପଡୁଛି ।

ପତ୍ନୀଙ୍କ କଥାଶୁଣି ଝାଳେଇ ପଡ଼ିଥିବା ଅମରେନ୍ଦ୍ରଙ୍କର ଶରୀର ବିଜୁଳି ଆସିଯିବାରୁ ପଙ୍ଖା ପବନ ବାଜି ଆରାମ ଲାଗିଲା ଓ ମନକୁ ଭାରାକ୍ରାନ୍ତ କରିଦେଉଥିବା ବୈଠକ ଘର ବକ୍ତବ୍ୟ ସବୁ ଫ୍ୟାନ୍ ର ଘୁର ଘୁରକ୍ ଆବାଜରେ ଅସ୍ପଷ୍ଟ ହେଇଗଲା ।

ଅମରେନ୍ଦ୍ର ତକିଆ ତଳୁ ନିଜ ଚଷମାଟି କାଢ଼ି ପିନ୍ଧିପକାଇ ଚିନ୍ତା କରିବାକୁ ଲାଗିଲେ - ସତରେ କ'ଣ କନ୍ୟା ସନ୍ତାନ ଜନ୍ମ କରିଥିବା ମା' ମାନଙ୍କ ଠାରୁ ପୁତ୍ରବତୀ ମା' ମାନେ ନିକୃଷ୍ଟ ? ?

# ସହକାରୀ

ମେଡିକାଲ ଡାଇରେକ୍ଟର ଡକ୍ଟର ସଚ୍ଚିଦାନନ୍ଦ ମିଶ୍ରଙ୍କ ପର୍ସନାଲ ଆସିଷ୍ଟାଣ୍ଟ ଦାସ ବାବୁ ଆଉ ମାତ୍ର ଦଶଦିନ ପରେ ଅବସର ଗ୍ରହଣ କରିବେ। ସେହି ପଦରେ କେମିତି ଲୋକଟିଏ ଆସି ଯୋଗଦାନ କରିବ ଭାବି ଡକ୍ଟର ମିଶ୍ର ଚିନ୍ତିତ।

ଘରେ ଯେମିତି ନିରୀହା ସ୍ତ୍ରୀ ଥିଲେ ଶାନ୍ତିରେ ଦିନ କଟିଯାଏ ସେହିପରି ଅଫିସ୍‌ରେ ବ୍ୟକ୍ତିଗତ ସହକାରୀ ଦରକାରଠାରୁ ଅଧିକ ଚାଲାଖ ନ ହୋଇ ଆଜ୍ଞାକାରୀ ହୋଇଥିଲେ ଚାକିରି ଜୀବନଟି ସୁରୁଖୁରୁରେ ଆଗକୁ ବଢ଼ିଚାଲେ।

ଭୋଲ୍‌ଟେଜ୍ ଷ୍ଟାବିଲାଇଜର୍ ଯେମିତି ଦାମୀ ଏସି., ଫ୍ରିଜ୍‌କୁ ରକ୍ଷା କରେ ଠିକ୍ ସେହିପରି ଉପଯୁକ୍ତ ବ୍ୟକ୍ତିଗତ ସହକାରୀଟିଏ ଥିଲେ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େନାହିଁ। ଏହା ଡକ୍ଟର ମିଶ୍ର ନିଜ ଅଭିଜ୍ଞତାରୁ ଜାଣିଛନ୍ତି।

ଦୁଇବର୍ଷ ପୂର୍ବେ ଡକ୍ଟର ମିଶ୍ର ଜେନେରାଲ୍ ମ୍ୟାନେଜର୍ ହେଲା ପରେ ସି.ଆର.ନାଇଡୁ ନାମକ ଜଣେ ବ୍ୟକ୍ତି ତାଙ୍କର ପିଏ ହୋଇ ଯୋଗଦାନ କରିଥିଲେ। ଲୋକଟି ବାହାରକୁ ବେଶ୍ ଭଦ୍ର ଓ ବୁଦ୍ଧିମାନ ଜଣାପଡୁଥିଲେ ବି ଲୋଭର ବଶବର୍ତ୍ତୀ ହୋଇ ସେହି ବର୍ଷ ହେବାକୁ ଥିବା ମେଡିକାଲ ଅଫିସର ପ୍ରବେଶିକା ପରୀକ୍ଷାରେ ଗୋପନୀୟ ପ୍ରଶ୍ନପତ୍ର ଜଣେ ଆବେଦନକାରୀ ଡାକ୍ତରଙ୍କୁ ବିକ୍ରି କରି ଦେଇଥିଲେ।

ଯାହାହେଉ ପରୀକ୍ଷା ପୂର୍ବ ଦିନ ଏହା ଜଣା ପଡିଯାଇଥିଲା ଓ ପରୀକ୍ଷାକୁ ରଦ୍ଦ କରାଯାଇ ନାଇଡୁକୁ ଦଣ୍ଡିତ କରାଯାଇ ସୁଦୂର ଖଣି ଅଂଚଳକୁ ବଦଳି କରାହୋଇଥିଲା।

ନାଇଡୁ ବିଶ୍ୱାସରେ ବିଷ ଦେଇଥିବାରୁ ଡକ୍ଟର ମିଶ୍ରଙ୍କୁ ଶକ୍ତ ଧକ୍କା ଲାଗିଥିଲା।

ନାଇଡୁ ପରେ ଏବେର ଦାସବାବୁ ପି.ଏ ହୋଇ ଆସିଥିଲେ। ଲୋକଟି ସଚ୍ଚୋଟ ହେଲେ ସୁଦ୍ଧା ଖୁବ୍ ବଦରାଗୀ। ତାଙ୍କ ବ୍ୟବହାର ରୁକ୍ଷଥିବାରୁ ବାହାରର ଗଣ୍ଡଗୋଳ ଡାଇରେକ୍ଟରଙ୍କ କକ୍ଷକୁ ଧସେଇ ପଶୁଥିଲା।

ଏଇ ହସ୍‌ପିଟାଲରେ ସବୁବେଳେ କିଛି କିଛି ଅଭିନବ ଘଟଣାମାନ ଘଟୁଥାଏ। କେବେ ଡାକ୍ତରଖାନା କର୍ମଚାରୀଙ୍କ ଦାୟିତ୍ୱହୀନତା ଯୋଗୁ ମର୍ଗରୁ ଅନ୍ୟ ଏକ ଶବ ତାଙ୍କ ପରିବାରକୁ ହସ୍ତାନ୍ତର କରିଦିଅନ୍ତି ତ କେତେବେଳେ ଅସାବଧାନ ହୋଇ ଧାଈ ନର୍ସରୀର ନବ ଜାତକକୁ ଅନ୍ୟ ଏକ ମା' ହାତକୁ ଦେଇ ଦିଅନ୍ତି। ପୁଣି କେବେ ରୋଗୀର ମୃତ୍ୟୁ ଡାକ୍ତରଙ୍କ ଅବହେଳା ପାଇଁ ହେଲା ବୋଲି ଡାଇରେକ୍ଟରଙ୍କୁ ଘେରାଉ କରିବାକୁ ଜନସମୁଦ୍ର ମାଡି ଆସନ୍ତି। ସମୟେ ସମୟେ ସଫାଇ କର୍ମଚାରୀ ଝାଡୁ ଛାଡ ଆନ୍ଦୋଳନ ବି କରନ୍ତି। ଆଉ କେବେ କୌଣସି ଡାକ୍ତରଙ୍କ ପ୍ରମୋଶନ ହେଲାନି ବୋଲି ସିଏ ଅଫିସ୍ ଆଗରେ ଧାରଣା ଦିଅନ୍ତି।

ଏଇ ସବୁ ଅଘଟଣକୁ କ୍ଷଣକୋପୀ ଦାସ ବାବୁ ଧୈର୍ଯ୍ୟର ସହିତ ସମାଧାନ କରିପାରୁ ନଥିଲେ।

ତେଣୁ ଏଥର ଡକ୍ଟର ମିଶ୍ର ଠିକ୍ କରିଛନ୍ତି ନିଜର ସହକାରୀକୁ ନିଜେ ବାଛିକରି ଆଣିବେ।

ସକାଳେ ଡାକ୍ତରଖାନାରେ ପହଞ୍ଚୁ ପହଞ୍ଚୁ ଡକ୍ଟର ମିଶ୍ର ତାଙ୍କ ପର୍ସନାଲ ଆସିଷ୍ଟାଣ୍ଟ ଦାସ ବାବୁଙ୍କୁ କହିଥିଲେ ପର୍ସନାଲର ଡିଜିଏମ୍ ସିଂ ବାବୁଙ୍କୁ ଫୋନ୍ ଲଗାଇବା ପାଇଁ।

ତାଙ୍କ ପାଟିରୁ କଥା ନସରୁଣୁ ଦାସ ବାବୁ ସେଠାକୁ ଫୋନ୍ ଲଗାଇ - "ନମସ୍କାର ମୁଁ ଡାଇରେକ୍ଟର ଅଫିସ୍‌ରୁ ଦାସ କହୁଛି - ଡାଇରେକ୍ଟର ଆପଣଙ୍କ ସାଙ୍ଗେ କଥା ହେବେ" କହି ଫୋନଟି ଡକ୍ଟର ମିଶ୍ରଙ୍କ ହାତକୁ ବଢ଼ାଇ ଥିଲେ।

ଡାଇରେକ୍ଟର ଫୋନ୍ ଧରି "ହାଲୋ" କହିଲା ମାତ୍ରେ ସେପଟୁ ମିଷ୍ଟର ସିଂ କହି ଉଠିଲେ - ଗୁଡ୍ ମର୍ଣ୍ଣିଂ ସାର୍। ଆପଣ ଭଲ ଅଛନ୍ତି ତ ?

- ହଁ ଭଲ ଅଛି। ଆଚ୍ଛା ଶୁଣନ୍ତୁ ଆପଣଙ୍କ ସେ ପେସେଣ୍ଟ ଭଲ ହୋଇଗଲାଣି। କାଲି ସଂଧ୍ୟାରେ ମୁଁ ତାକୁ ଦେଖିଥିଲି। ଆଜି ତାକୁ ଆଇ.ସି.ୟୁରୁ ସିଫ୍‌ଟ୍ କରିବାକୁ ଇନ୍‌ଚାର୍ଜ ସିଷ୍ଟରଙ୍କୁ କହି ଦେଇଛି।

- ସାର୍ ଯାହାହେଉ ଆପଣଙ୍କ ପାଇଁ ଲୋକଟା ବଂଚିଗଲା। ସିଏ ଆମ ଅଫିସର ଜଣେ ଡେପୁଟି ମ୍ୟାନେଜର। ସେଥିପାଇଁ ତ ସେଦିନ ରାତି ଅଧରେ ଆପଣଙ୍କୁ ହଇରାଣ କଲି।

- ହଇରାଣ ଆଉ କ'ଣ ? ଡାକ୍ତରୀ ଜୀବନରେ ଏ ସବୁ ନିତିଦିନିଆ ଘଟଣା।

ତାପରେ ପ୍ରସଙ୍ଗ ବଦଳାଇ ଡାକ୍ଟର ମିଶ୍ର କହିଲେ - ଆପଣଙ୍କ ପାଖେ ଗୋଟେ କାମ ଥିଲା।

- ହଁ ସାର୍ କୁହନ୍ତୁ।

- ଆପଣ ଜାଣିଥିବେ ମୋର ପର୍ସନାଲ ଆସିଷ୍ଟାଣ୍ଟ୍ ଏଇ ମାସରେ ରିଟାୟାର୍ କରୁଛନ୍ତି।

- ହଁ ସାର୍ ମୁଁ ଜାଣିଛି। ସେଥିପାଇଁ ତ ଆଜି ଗତ ମାସରେ ଇ.ଜିରୋ ପ୍ରମୋସନ ପାଇଥିବା ତିନିଜଣ ଅଭିଜ୍ଞ ତଥା ବୟସ୍କ ବ୍ୟକ୍ତିଙ୍କର ବାୟୋଡାଟା ଆପଣଙ୍କ ପାଖକୁ ପଠାଉଛି। ସେମାନଙ୍କ ଭିତରୁ ଆପଣ ଯାହାକୁ କହିବେ ତାକୁ ଆପଣଙ୍କ ପାଖେ ପୋଷ୍ଟିଂ କରିଦେବି।

- ବାୟୋଡାଟା ଦେଖି କୌଣସି ବ୍ୟକ୍ତି ବିଷୟରେ କିଛି ଧାରଣା କରି ହୁଏନାହିଁ।

- ହଁ ସାର୍ ସେଇଟା ସତକଥା।

- ସେଥିପାଇଁ ମୁଁ ଭାବୁଛି ବାୟୋଡାଟା ନ ପଠାଇ ବରଂ ସେମାନଙ୍କୁ ମୋ ଚ୍ୟାମ୍ବରକୁ ପଠାଇ ଦିଅନ୍ତୁ। ମୁଁ ସେମାନଙ୍କ ସାଙ୍ଗେ କଥା ହେବାକୁ ଚାହେଁ।

- ହଉ ସାର୍ ଆପଣ ଯେବେ କହିବେ ମୁଁ ସେମାନଙ୍କୁ ପଠାଇଦେବି।

- ତାହେଲେ କାଲି ଦଶଟା ବେଳେ ପଠାଇ ଦିଅନ୍ତୁ।

ତା ପରଦିନ ରାଉଣ୍ଡ ସାରି ଡକ୍ଟର ମିଶ୍ର ସାଢ଼େ ଦଶଟାବେଳେ ନିଜ ପ୍ରକୋଷ୍ଠକୁ ଫେରିଲା ପରେ ତାଙ୍କ ହାତକୁ ତିନିଜଣଙ୍କ ନାମ ଲେଖାଥିବା ଚିର୍କୁଟିଟି ବଢ଼ାଇ ଦେଇ ସହକାରୀ ଦାସ ବାବୁ କହିଲେ - ଏଇ ତିନିଜଣ ବ୍ୟକ୍ତି ତାଙ୍କୁ ସାକ୍ଷାତ କରିବା ପାଇଁ ପର୍ସନାଲ୍ ଡିପାର୍ଟମେଣ୍ଟରୁ ଆସିଛନ୍ତି।

ଚପରାଶୀ ଦେଇଥିବା ଧୂମାୟିତ କଫି ପିଉ ପିଉ ଡାଇରେକ୍ଟର ଚିର୍କୁଟି ଆଡେ ଚାହିଁ ଦାସବାବୁଙ୍କ ଉଦ୍ଦେଶ୍ୟରେ କହିଲେ - ମୁଁ ବେଲ୍ ମାରିଲେ ଆପଣ କ୍ରମିକ ନମ୍ବର ଅନୁଯାୟୀ ଜଣକ ପରେ ଜଣକୁ ପଠାଇବେ।

ହଉ ସାର୍ କହି ଦାସ ବାବୁ ସେମାନଙ୍କୁ ବସାଇଥିବା ସଂଲଗ୍ନ ପ୍ରତୀକ୍ଷା କକ୍ଷକୁ ଗଲେ।

କଫି ପିଇ ସାରି ବେଲ୍ ଦାବିଲେ ଡକ୍ଟର ମିଶ୍ର।

ପ୍ରଥମ ବ୍ୟକ୍ତି ବିକାଶ ସେଠୀ ଡାଇରେକ୍ଟରଙ୍କ କକ୍ଷକୁ ପଶି ଦୁଇହାତ ଟେକି ନମସ୍କାର କଲେ।

ଡକ୍ଟର ମିଶ୍ର ପ୍ରତି ନମସ୍କାର କରି ତାଙ୍କୁ ସାମ୍ନା ଚୌକିରେ ବସିବା ପାଇଁ କହିଲେ।

ଅସଜଡା ଶୁଭ୍ର କେଶ ରାଶି ସହ ଆଉମଇଳା ପୋଷାକରେ ବିକାଶ ବିମର୍ଷ ଓ ବୟସ୍କ ଲାଗୁଥିଲେ।

ତାଙ୍କ ସହିତ କଥା ଭାଷା କରି ଡକ୍ଟର ମିଶ୍ର ତାଙ୍କ ଏତାଦୃଶ ଚେହେରାର କାରଣ ଜାଣି ପାରିଲେ।

ପୁତ୍ର ସନ୍ତାନର ଆଶାରେ ତାଙ୍କର ପାଞ୍ଚଗୋଟି କନ୍ୟା। ଜ୍ୟେଷ୍ଠା କନ୍ୟା ଦୁଇଟି ଗ୍ରାଜୁଏସନ୍ ସାରି ଉପଯୁକ୍ତ ବରପାତ୍ର ଅପେକ୍ଷାରେ ଘରେ ବସିଛନ୍ତି। ମଧ୍ୟମା ଦୁଇଟି ହାଇସ୍କୁଲରେ ଅଧ୍ୟୟନରତ ଓ କନିଷ୍ଠା କନ୍ୟାର ବୟସ ମାତ୍ର ଚାରିବର୍ଷ। ଏହା ସହିତ ତାଙ୍କର ପତ୍ନୀ ମାନସିକ ରୋଗୀ।

ନିରାଶ ହୋଇ ଡକ୍ଟର ମିଶ୍ର ପ୍ରଶ୍ନ କଲେ - ଏବେ ଆସିଥିବା ସର୍କୁଲାର ଅନୁଯାୟୀ ମୁଁ ସ୍ୱେଚ୍ଛାକୃତ ଅବସର ନେବାକୁ ଚାହୁଁଛି। ସେଥିରେ ଆପଣଙ୍କ ମତ କ'ଣ ?

ମଥାର କେଶରେ ବାମ ହାତର ଆଙ୍ଗୁଳି ଚଳାଇ ନେଇ ଅନାସକ୍ତ ଭାବେ ବିକାଶ କହିଲେ - ସାର୍ ଏଇଟା ଆପଣଙ୍କ ନିଜସ୍ୱ ନିଷ୍ପତ୍ତି ସେଥିରେ ମୁଁ ବା କ'ଣ କରିପାରିବି ?

ତାଙ୍କ ସମସ୍ୟା ସଂପର୍କରେ ଉଦାସୀନ ମନେ ହେଉଥିବା ବିକାଶ ସେଠୀଙ୍କୁ କ୍ଷଣେ ଚାହିଁ ଡକ୍ଟର ମିଶ୍ର କହିଲେ - ଆପଣ ବର୍ତ୍ତମାନ ଯାଇପାରନ୍ତି।

ବିକାଶ ଚୌକିରୁ ଉଠିପଡି ଡାଇରେକ୍ଟରଙ୍କୁ ନମସ୍କାର କରି ଚପଲ ଘୋଷାରି ଘୋଷାରି କକ୍ଷରୁ ବାହାରିଗଲେ।

ଡକ୍ଟର ମିଶ୍ରଙ୍କ ବେଲ୍ ବାଜିବା ମାତ୍ରେ ଦ୍ୱିତୀୟ ବ୍ୟକ୍ତି ପରିମଳ ବିଶ୍ୱାସ ପ୍ରବେଶ ଦ୍ୱାରା ପାଖେ ଠିଆ ହୋଇ ପଚାରିଲେ - ମେ ଆଇ କମ୍ ଇନ୍, ସାର ?

- ୟେସ୍ କମ୍ ଇନ୍।

କକ୍ଷ ଭିତରେ ପଶୁ ପଶୁ ପରମଳ ବିଶ୍ୱାସ ଡାଇରେକ୍ଟରଙ୍କୁ ନମସ୍କାର ଜଣାଇ ସାମନାକୁ ଆସିଥିଲେ।

ଡକ୍ଟର ମିଶ୍ର ପରିମଳଙ୍କୁ ବସିବାକୁ କହି ତାଙ୍କ ଉପରେ ଆଖି ବୁଲେଇ ନେଲେ। ଗୋରା, ପତଳା ପରିମଳ ଚୁଟି ଓ ନିଶକୁ ରଂଗେଇ ଥିଲେ ବି ମୁହଁର ଅବାଧ ବାର୍ଦ୍ଧକ୍ୟ ଜନିତ କୁଂଚିତ ରେଖାମାନ ପ୍ରକଟିତ ହୋଇ ତାଙ୍କର ବୟସ ସୂଚାଇ ଦେଉଥିଲା।

ଡକ୍ଟର ମିଶ୍ର ଗମ୍ଭୀର ହୋଇ ତାଙ୍କ ସହିତ କଥା ହେବା ଆରମ୍ଭ କଲେ ଏବଂ ଜାଣିବାକୁ ପାଇଲେ ତାଙ୍କ ପତ୍ନୀ ସରକାରୀ ବିଦ୍ୟାଳୟରେ ଶିକ୍ଷୟିତ୍ରୀ। ମ୍ୟାନେଜ୍‌ମେଣ୍ଟ କୋଟାରେ ସିଟ୍ ପାଇଥିବା ବଡ ପୁଅର ଏବେ ତୃତୀୟ ବର୍ଷର ଇଞ୍ଜିନିୟରିଂ ଛାତ୍ର। ଟଙ୍କାର ଅସୁବିଧା ଥିବାରୁ ଏବର୍ଷ ସାନପୁଅକୁ ସେଠାରେ ନାମ ଲେଖାଇ ପାରିଲେନି। ଆସନ୍ତା ବର୍ଷ ପଇସା ପତ୍ର ଯୋଗାଡ କରି ଦେବେ ବୋଲି ଆଶା ରଖିଛନ୍ତି।

ଲୋକଟି ଡକ୍ଟର ମିଶ୍ରଙ୍କୁ ବେଶ୍ ଯୋଗାଡିଆ ଓ ଚତୁର ମନେହେଲା।

ଡକ୍ଟର ମିଶ୍ର ପଚାରିଲେ - ମୁଁ ଏବେ ଭି.ଆର. ନେବି ବୋଲି ଭାବୁଛି । ଆପଣଙ୍କ ମତାମତ କ'ଣ ?

ମୀନ ସଦୃଶ କ୍ଷୁଦ୍ର ଚକ୍ଷୁଦ୍ୱୟକୁ ଆଉ ଟିକେ ସଂକୁଚିତ କରିଦେଇ ବିଶ୍ୱାସୀ ପରି ପରିମଳ କହିଲେ - ସାର ଏଥର ଭି.ଆର.ଟା ସେମିତି କିଛି ଲାଭଜନକ ନୁହେଁ । ତା ଛଡା ଆପଣଙ୍କରତ ଆହୁରି ପାଞ୍ଚବର୍ଷ ଚାକିରି ଅଛି ।

ଡକ୍ଟର ମିଶ୍ର ଭାବିଲେ ଲୋକଟା ତାହେଲେ ତାଙ୍କ ବିଷୟରେ ସବୁ ଖବର ରଖିଚି ।

ପରିମଳ ଭି.ଆର. ସ୍କିମ୍ ଉପରେ ରିସର୍ଚ୍ଚ କଲାଭଳି ଅନର୍ଗଳ କହି ଚାଲିଲେ - ସାର୍ ଆପଣଙ୍କର କେବଳ ତିନିବର୍ଷର ବେସିକ, ଡିଏ ମିଳିବ । ବାକୀ ଦୁଇ ବର୍ଷର ତ ପୂରା ଲସ୍ ହେବ । ତା ଛଡା ତିନିବର୍ଷର ବେସିକ୍, ଡି.ଏ. ମିଳିଲେ ବି ବର୍ଷକୁ ପ୍ରାୟ, ତିନି ଲକ୍ଷ ଟଙ୍କା କ୍ଷତି ହେବ ସାର ।

ଡକ୍ଟର ମିଶ୍ର ପ୍ରଶ୍ନ କଲେ କେମିତି ?

- ସାର୍ ପ୍ରତ୍ୟେକ ମାସରେ କମ୍ପାନୀ ଦେଉଥିବା ପି.ଏଫ୍., ଏଲ୍‌ଟି, ବୋନସ୍, ରିୱାର୍ଡ, ଏଣ୍ଟରଟେନ୍‌ମେଣ୍ଟ, ହାଉସ୍‌ରେଣ୍ଟ୍ ସହ ଆନୁଆଲ୍ ବୋନସ୍, ଏଲ୍ ଟି ସି, ଏଲ୍ ଏଲ୍ ଟି ସି, ଲିଭ୍ ଏନ୍‌କ୍ୟାସ୍‌ମେଣ୍ଟ ଆଦି ମିଶି ମାସକୁ ପଚିଶ ହଜାରରୁ ଅଧିକ ଟଙ୍କା କମ୍ପାନୀ ଆପଣଙ୍କୁ ଦେବ ନାହିଁ ।

ତେଣୁ ମୋ ମତରେ ଆପଣ ଭି.ଆର୍. ନିଅନ୍ତୁନି ସାର୍ ।

ହିସାବୀ ଓ ମାତ୍ରାଧିକ ପରିମାଣରେ ଚାଲାଖ ଓ ଧୂର୍ତ୍ତ ପରିମଳ କେବେ ବି ଆଦର୍ଶ ସହକାରୀ ହେଇ ପାରିବେନି ଭାବି ଡକ୍ଟର ମିଶ୍ର ତାଙ୍କୁ ବିଦାୟ ଦେଲେ ।

ଶେଷ ନାମଟି ପଢ଼ିଲେ ଡକ୍ଟର ମିଶ୍ର - ଆଲୋକ ପତି ।

ବେଲ୍ ମାରିଲା ପରେ ଆଲୋକ ପ୍ରତି କକ୍ଷ ଭିତରେ ପଶି ଖୁବ୍ ନମ୍ରତାର ସହିତ ନମସ୍କାର କଲେ ।

ପ୍ରତି ନମସ୍କାର ଜଣାଇ ତାଙ୍କୁ ବସିବାକୁ କହି ତାଙ୍କ ବ୍ୟକ୍ତିତ୍ୱ ଜାଣିବା ପାଇଁ ତାଙ୍କ ଆଡେ ଚାହିଁ ଦେଖିଲେ - ବୟସ ପଚାଶ ଅତିକ୍ରମ କରିସାରିଥିଲେ ବି ଲଲାଟ ରେଖାଶୂନ୍ୟ ଓ ମୁହଁରେ ନିରୁଦ୍‌ବିଗ୍ନ ଭାବ । ସୁଗଠିତ ଶରୀର ସହ ଶିରରେ କଳାଧଳା ଚୁଟିର ସମାବେଶ ।

ତାଙ୍କୁ ପ୍ରଶ୍ନ ପଚାରି ଜାଣିଲେ - ତାଙ୍କ ଝିଅ ଦୁଇ ବର୍ଷ ହେଲାଣି ବାହା ହେଇଯାଇଛି ଓ ବର୍ତ୍ତମାନ ଜ୍ୱାଇଁ ସାଙ୍ଗରେ ଦୁବାଇରେ ରହୁଛି ଏବଂ ପୁଅ ଏ ବର୍ଷ ଏନ୍ ଆଇ ଟିରେ କମ୍ପ୍ୟୁଟରରେ ଆଡ୍‌ମିଶନ୍ ନେଇଛି । ତାଙ୍କ ପତ୍ନୀ ଗୃହିଣୀ ।

ଆଶ୍ୱସ୍ତ ହେଲେ ଡକ୍ଟର ମିଶ୍ର । ସୁଖମୟ ଗାର୍ହସ୍ଥ୍ୟ ଜୀବନ ବିତାଉଥିବା ବ୍ୟକ୍ତି

ନିଶ୍ଚିତ ଭାବରେ ଅଫିସ୍‌ରେ ଅଧିକ କାର୍ଯ୍ୟକ୍ଷମ ହେଇଥାଏ।

ମୁଖ୍ୟ ପ୍ରଶ୍ନଟି ଏଥର ପଚାରିଲେ ଡକ୍ଟର ମିଶ୍ର - ମୁଁ ଆସନ୍ତା ମାସରେ ଭି.ଆର୍ ନେବି ବୋଲି ଠିକ୍ କରିଛି - ଆପଣ କ'ଣ ଭାବୁଛନ୍ତି ?

ବିନୟୀ ଆଲୋକ ଡକ୍ଟର ମିଶ୍ରଙ୍କ ସାଙ୍ଗେ ଏକ ମତ ହୋଇ କହିଲେ ସାର୍ ଆପଣ ଠିକ୍ ନିର୍ଣ୍ଣୟ ନେଇଛନ୍ତି। ଚାକିରି କଲେ ଅବଶ୍ୟଗୁଡ଼ାଏ ଟଙ୍କା ମିଳୁଛି। କିନ୍ତୁ ଟଙ୍କା କ'ଣ ସବୁବେଳେ ମଣିଷକୁ ସୁଖ ଶାନ୍ତି ଦେଇପାରେ ?

ଯେଉଁ ଉତର ଆଶା କରୁଥିଲେ ସେହି ଉତ୍ତର ଶୁଣି ଡକ୍ଟର ମିଶ୍ରଙ୍କ ମୁହଁଟି ଉଜ୍ଜ୍ୱଳ ଦିଶିଲା।

ଆଲୋକଙ୍କୁ ଆଉ ଟିକେ ଅଧିକ ଜାଣିବାକୁ ଇଚ୍ଛା କରି ପରୀକ୍ଷାରୁ ଦ୍ୱିତୀୟ ସୋପାନକୁ ଯାଇ କହିଲେ - ବେଳେ ବେଳେ ପୁଣି ଭାବୁଛି ଅବସର ନେଇ ଘରେ ବସି କ'ଣ ବା କରିବି ? ଚାକିରିରେ ସମୟ ତ ବିତିଯାଉଛି।

ଶ୍ରଦ୍ଧାଳୁ ସ୍ୱରରେ ଆଲୋକ କହିଲେ - ସେମିତି ଭାବିଲେ ଆପଣ ଭି.ଆର୍. ନିଅନ୍ତୁନି ସାର୍। ଆପଣଙ୍କ ଭଳି ଖ୍ୟାତନାମା ଡାକ୍ତର ଅବସର ନେଇଗଲେ ରୋଗୀଗୁଡ଼ା ହନ୍ତସନ୍ତ ହେଇଯିବେ।

ଡକ୍ଟର ମିଶ୍ର ସରଳତାର ଛାପ ଥିବା ଆଲୋକଙ୍କ ମୁହଁ ଆଡେ ଚାହିଁ ଭାବିଲେ - ଇଏ ବେଶ୍ ଆଜ୍ଞାକାରୀ ମଣିଷଟିଏ।

ସନ୍ତୁଷ୍ଟ ମନରେ ଆଲୋକଙ୍କୁ ବିଦାୟ ଦେଇସାରି ଡକ୍ଟର ସଚ୍ଚିଦାନନ୍ଦ ମିଶ୍ର ତାଙ୍କର ପି.ଏ. ଦାସ ବାବୁଙ୍କୁ ପର୍ସନାଲ୍‌ର ଡି.ଜି.ଏମ୍‌ଙ୍କୁ ଫୋନ୍ ଲଗାଇବା ପାଇଁ ନିର୍ଦ୍ଦେଶ ଦେଲେ।

# ଯାଦୁ

ରବିବାର ସକାଳର ଜଳଖିଆ ଚୁଡ଼ା ଉପମା ମନୋଜବାବୁଙ୍କ ଦେଇସାରି ନିଜେ ଆଉ କିଛି ସମୟ ପରେ ଖାଇବେ ଭାବି ଶୀତ ପ୍ରକୋପରୁ ନିଜକୁ ରକ୍ଷା କରିବା ପାଇଁ ମମତା ଖରାରେ ପଡ଼ିଥିବା ଚୌକି ଉପରେ ବସିପଡ଼ିଲେ । ଚାରିଆଡ଼େ ଆଖି ବୁଲାଇ ଆଣିଲେ - କାଳେ ସିଏ ଫେରି ଆସୁଥିବ !

ଆଜିକୁ ଠିକ୍ ଛ' ମାସ ହେଲା ସିଏ ନିଖୋଜ ହେଇଯାଇଥିଲେ ବି ମନରେ ଆଶା ଅଛି - ସିଏ ନିଶ୍ଚୟ ଦିନେ ଫେରିଆସିବ ।

ମମତା ଓ ମନୋଜ ବାବୁ ତା'ର କୌଣସି କଥାରେ ଉଣା କରିନଥିଲେ । ସନ୍ତାନ ଭଳି ତାକୁ ସ୍ନେହ କରୁଥିଲେ ଓ ଯତ୍ନ ନେଉଥିଲେ । କେଉଁ ପ୍ରଲୋଭନରେ ସିଏ ଘର ଛାଡ଼ି ଚାଲିଗଲା ?

ଏଇ ଛ ମାସ ଭିତରେ ଶୋକରେ ଜର୍ଜରିତ ମମତା କେତେଥର ମନୋଜବାବୁଙ୍କୁ କହିଲେଣି - ଖବର କାଗଜ ବା ଟିଭିରେ ତା'ର ଫଟୋ ଦେଇ ନିରୁଦ୍ଦିଷ୍ଟ ହେଇଥିବା କଥା ଜଣାଇଲେ ହୁଏତ କିଛି ଖୋଜ, ଖବର ମିଳିଯା'ନ୍ତା ।

ପତ୍ନୀଙ୍କ କଥାଶୁଣି ମନୋଜବାବୁ ଦୀର୍ଘ ନିଶ୍ୱାସଟିଏ ପକାଇ କ୍ଷୀଣ ସ୍ୱରରେ କୁହନ୍ତି- ଲୋକେ ଆମକୁ ପାଗଳ ବୋଲି କହିବେ ।

ଚାରିଆଡୁ ନିରାଶ ହୋଇ ମମତା ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି କୁହନ୍ତି - ପ୍ରଭୁ ସିଏ ପଛେ ଆମ ପାଖକୁ ନ ଫେରୁ କିନ୍ତୁ ଯେଉଁଠି ଅଛି ଭଲରେ ଥାଉ ।

ମନୋଜବାବୁ ଓ ମମତା ନିଃସନ୍ତାନ ଥିବାରୁ ତାକୁ ନିଜର ସନ୍ତାନ ଭଳି ଭଲ ପାଉଥିଲେ । ସିଏ ମଧ୍ୟ ସେମାନଙ୍କୁ କିଛି କମ୍ ଭଲ ପାଉନଥିଲା । ସେମାନଙ୍କ ସାଙ୍ଗେ

ରହୁଥିଲା, ଶୋଉଥିଲା ଓ ସେମାନଙ୍କ ହାତରୁ ଖାଉଥିଲା । ଦିନେ ବି କେବେ ଅମାନିଆ ହେଉନଥିଲା ।

ମମତାଙ୍କର ମନେ ପଡ଼ିଲା ତା' ସହିତ ତାଙ୍କର ପ୍ରଥମ ସାକ୍ଷାତର ସ୍ମୃତି ।

ଦେଢ଼ବର୍ଷ ପୂର୍ବେ ଭାଦ୍ରବ ମାସରେ ଏକ ମେଘୁଆ ସକାଳ । ମନୋଜବାବୁ ଗାଁକୁ ଯାଇଥାଆନ୍ତି । ମମତା ସବୁଦିନ ପରି ଠାକୁର ଘରେ ପୂଜା ସାରି ବୃନ୍ଦାବତୀଙ୍କ ପୂଜା ପାଇଁ ହାତରେ ଜଳ ଭରା ପିତ୍ତଳ ଗଡୁ ଓ ଥାଳିଆରେ ଭୋଗ ପାଇଁ ଛେନା ପୋଡ଼ରୁ ଖଣ୍ଡେ ଧରି ଘର ସାମନା ପଟେ ଥିବା ତୁଳସୀ ଗଛ ମୂଳକୁ ଆସିଥିଲେ । ଚଉରା ମୂଳକୁ ଆସୁଆସୁ ମମତାଙ୍କର ତା ଉପରେ ନଜର ପଡ଼ିଥିଲା ଗଡୁଟିକୁ ଚଉରାମୂଳରେ ରଖିଦେଇ କ୍ଷୀପ୍ର ଗତିରେ କୁକୁର ପାଖକୁ ଯାଇ ଛେନାପୋଡ଼ରୁ ଖଣ୍ଡେ ଭାଙ୍ଗି ଦୂରକୁ ଫିଙ୍ଗି ଦେଇଥିଲେ । ଲୋଭନୀୟ ଖାଦ୍ୟ ଦେଖି ଦରମରା ଜୀବଟିକୁ ପାଟିରୁ କାଢ଼ି ସେହିଠାରେ ପକାଇଦେଇ ଖାଇବା ଆଶାରେ କୁକୁରଟି ଦୂରକୁ ଚାଲିଯାଇଥିଲା ।

ମମତା ଜୀବଟି ଆଡ଼େ ଚାହିଁ ଦେଖିଲେ ସିଏ ଧୀରେ ଧୀରେ ନିଶ୍ୱାସ ନେଉଛି । ପ୍ରାଣୀଟି ଚୁଚୁନ୍ଦ୍ରା କି ମୂଷା ଜାଣି ହେଉନଥିଲା ।

ତାକୁ ପାଟିରେ ଧରିଥିବା କା' କା' ରାବ ଶୁଣି ମମତା ଉପରକୁ ଚାହିଁ ଦେଖିଲେ ତାକୁ ଝାମ୍ପିନେବା ପାଇଁ କାଉଟିଏ ମୁଣ୍ଡ ଉପରେ ଥିବା ଆମ୍ବ ଗଛ ଡାଳରେ ବସିଛି । ଏଣେ କୁକୁରଟି ଛେନାପୋଡ଼ ଖାଇସାରି ତା'ର ଶିକାର ଆଡ଼କୁ ଦ୍ରୁତ ଗତିରେ ଫେରୁଛି । କୁକୁର ଓ କାଉଠାରୁ ତାକୁ ରକ୍ଷା କରିବା ପାଇଁ ସେଇ ପାଖରେ ଶୁଖିଲା ପତ୍ର ଉଠାଇବା ପାଇଁ ରଖାହେଇଥିବା ଝୁଡ଼ିଟିକୁ ଖୁବ୍ ଶୀଘ୍ର ତା' ଉପରେ ଢ଼ାଙ୍କି ଦେଇ ଆଶ୍ୱସ୍ତ ହେଇଥିଲେ ମମତା ।

ତା' ପରେ ତର ହୋଇ ଘର ଭିତରକୁ ଆସି ବାସନ ମାଜୁଥିବା କାମବାଲି ସୁନିକୁ ସବୁକଥା କହିଥିଲେ । ଅବଶିଷ୍ଟ ଛେନାପୋଡ଼ଥିବା ଥାଳିଆଟିକୁ ରୋଷଇ ଘରେ ରଖିଦେଇ ମମତା ସୁନିକୁ ସାଂଗରେ ନେଇ ଝୁଡ଼ିଟି ଉଠାଇ ସେଇ ଅଦ୍ଭୂତ ପ୍ରାଣୀଟିକୁ ଦେଖାଇଥିଲେ ।

ତାକୁ ଦେଖିଲା ମାତ୍ରେ ସୁନି ବିଶେଷଜ୍ଞ ଭଳି କହିଥିଲା, "ମା' ଏଇଟା ପରା ନେଉଳ ପିଲା ।" ତା'ପରେ ସବୁ ଜାଣିଲା ପରି ଯୋଡ଼ିଥିଲା ତା' ମା' ନ ଥିଲାବେଳେ କୁକୁର ତାକୁ ଗାତରୁ ଟାଣି ନେଇ ଆସିଛି । ନେଉଳଟି ଅତି ସାନ ଥିବାରୁ ନିଜକୁ କୁକୁରଠାରୁ ରକ୍ଷା କରିପାରି ନାହିଁ ।

ମମତା ନେଉଳ ଛୁଆଟିକୁ ସ୍ନେହରେ ଡାହାଣ ହାତରେ ଉଠାଇ ଆଣି ବାମପାଖ ପାପୁଲିରେ ରଖି ତା' ଆଡ଼େ ଚାହିଁ ଦେଖିଲେ - ତା'ର ଚାରିଇଞ୍ଚିଆ ଶରୀରକୁ ଚାହିଁ

ଲାଞ୍ଜଟି ବେଶ୍ ମୋଟା ଓ ଗୁଣ୍ଡୁଚି ମୂଷାର ଲାଙ୍ଗୁଡ଼ ପରି ଲୋମରେ ଭର୍ତ୍ତି । ମୁହଁକୁ ଚାହିଁ ଦେଖିଲେ ଆଖି ଦୁଇଟି ବନ୍ଦ ଅଛି ଓ ହାତଗୋଡ଼ କିଛି ଚଳପ୍ରଚଳ କରୁନାହିଁ । କେବଳ ନିଶ୍ୱାସ ନେବା ବ୍ୟତୀତ ତା' ଠାରେ ଜୀବନ ଥିବାର ଅନ୍ୟ କୌଣସି ଲକ୍ଷଣ ନାହିଁ ।

ଏତେ ପାଖରୁ ମମତା କେବେ କୌଣସି ନେଉଳକୁ ଦେଖି ନଥିଲେ । କୁନିନେଉଳର ନିଷ୍ପାପ ମୁହଁଟି ତାଙ୍କୁ ଭାରି ଚିହ୍ନା ଚିହ୍ନା ଲାଗିଲା । କେଉଁଠି ଏମିତିଆ ମୁହଁଟିଏ ଦେଖିଛନ୍ତି ଭାବିଲା ବେଳକୁ ତାଙ୍କର ମନେପଡ଼ିଲା କିଛି ଦିନ ପୂର୍ବେ ଦେଖିଥିବା ସିନେମା 'କୋଇ ମିଲଗୟା'ର 'ଯାଦୁ'ର ମୁହଁ । ନେଉଳର ମୁହଁଟି ଥିଲା 'ଯାଦୁ' ମୁହଁର ଅବିକଳ ନକଲ ।

ତା ପିଠିରେ ସସ୍ନେହ ଆଙ୍ଗୁଳି ଚାଳନା କରି ମମତା କହିଥିଲେ- "ଯତ୍ନ କଲେ ବଞ୍ôଯିବ ।"

ମମତାଙ୍କ କଥାଶୁଣି ସୁନି କହିଥିଲା - ନାଇଁ ମା' ସିଏ ବଂଚିବନି ତାକୁ ଫିଙ୍ଗିଦିଅ ।

ସୁନିକୁ କୌଣସି ଉତ୍ତର ନ ଦେଇ ମମତା ତାକୁ ଅତି ଯତ୍ନରେ ହାତରେ ଧରି ଘର ଭିତରକୁ ଆଣିଥିଲେ ।

ଆଲଣାରୁ ଗୋଟିଏ ପୁରୁଣା ନରମ ସୂତା ଶାଢ଼ୀ ଆଣି ଆଠ ପରସ୍ତ କରି ଚଉତି ବାଡ଼ିପଟ ବାରଣ୍ଡାରେ ପାରିଦେଲେ । ତା' ଉପରେ ଆସ୍ତେକରି ନେଉଳ ଛୁଆକୁ ରଖି ମମତା ତା'ର କଅଁଳିଆ ପିଠିକୁ ଆଉଁସି କହିଥଲେ - "ତୁ ବଞ୍ଚିବୁ - ମୁଁ ତତେ ବଞ୍ଚାଇବି । ତୁ ଚାଲିବୁ - ଦୌଡ଼ିବୁ- ଖେଳିବୁ- ମୋ ଖେଳନା ହେବୁ ।" ଏତିକି କହୁକହୁ ତାଙ୍କ କଣ୍ଠ ରୁଦ୍ଧ ଓ ଆଖିଦ୍ୱୟ ସଜଳ ହୋଇଯାଇଥିଲା । କହିବାକୁ ଥିବା ଅନେକ କଥା ମନରେ ରହିଯାଇଥିଲା । ନିଜ ପିନ୍ଧା କାନିରେ ଆଖିରୁ ଗଡ଼ିଆସୁଥିବା ଲୁହକୁ ପୋଛି ମମତା ରୋଷେଇ ଘରକୁ ଯାଇଥିଲେ ।

ଅଳ୍ପ କ୍ଷୀରକୁ ଉଷୁମ କରି ଚିନି ପକାଇ ଗୋଟେ ଗିନାରେ ଢ଼ାଳି ଆଣି ନେଉଳ ଛୁଆର ପାଟିକୁ ସେଥିରେ ଲଗାଇ ଭାବିଥିଲେ ସିଏ ଜିଭ କାଢ଼ି ଚାଟି ଚାଟି ସବୁ ପିଇଦେବ । କିନ୍ତୁ ସିଏ କ୍ଷୀର ପିଇ ପାରିନଥିଲା ବରଂ କ୍ଷୀରରେ ନାକ ବୁଡ଼ିଯାଇ ନିଃଶ୍ୱାସ ବନ୍ଦ ହୋଇଯାଉଥିଲା ।

ମମତା ତୁଳା ଆଣି ଅତି ସବଧାନରେ ନେଉଳର କୁନି ପାଟିକୁ ବାମ ହାତରେ ବିଶି ଓ ବୁଢ଼ା ଆଙ୍ଗୁଳିରେ ଚାପି ଆଁ କରାଇ ଡ଼ାହାଣ ହାତରେ ଧରିଥିବା କ୍ଷୀର ଭିଜା ତୁଳାକୁ ଆସ୍ତେଆସ୍ତେ ତା' ପାଟିରେ ପକାଇଥିଲେ । କ୍ଷୀର ଢ଼ୋକିବା ପାଇଁ କିନ୍ତୁ ତା' ପାଖରେ ଶକ୍ତି ନଥିଲା । ତେଣୁ କ୍ଷୀର ତା' ପାଟିରୁ ଦୁଇପାଖରୁ ବୋହିଯାଇ ବେକକୁ ଓଦା କରିଥିଲା ।

ତାକୁ କ୍ଷୀର ପିଆଇବାରେ ଅସଫଳ ହେଲା ପରେ ମମତା ତା'ର ମୁହଁ ଓ

ବେକକୁ ନିଜ ଶାଢ଼ୀ କାନିରେ ଆସ୍ତେ କରି ପୋଛି ଦେଇ ତା' ଉପରେ ଝୁଡ଼ିଟି ଘୋଡ଼ାଇଦେଇ ଚଉରା ମୂଳକୁ ଯାଇଥିଲେ। ପୂଜାଶେଷରେ ମୁଣ୍ଡିଆ ମାରିବାବେଳେ ତାଙ୍କ ପାଟିରୁ ବାହାରିଥିଲା - ଭଗବାନ ତାକୁ ବଞ୍ଚାଇଦିଅ- ତାକୁ ବଞ୍ଚାଇଦିଅ।

ପୂଜା ସାରି ଜଳଖିଆ ନ ଖାଇ ମମତା ପୁଣି ପଛ ବାରଣ୍ଡାକୁ ଆସିଥିଲେ ଓ ଝୁଡ଼ିଟି କାଢ଼ି ଦେଖିଥିଲେ ସିଏ ଆଖି ଖୋଲିଛି ମମତା ଖୁସିରେ ଆତ୍ମହରା ହୋଇ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଥିଲେ। ତା' ପେଟରେ କିଛି ଖାଦ୍ୟ ପଡ଼ିଗଲେ ସିଏ ଖୁବ୍ ଶୀଘ୍ର ସୁସ୍ଥ ହୋଇଯାଆନ୍ତା ଭାବି ମମତା ଚିନ୍ତା କରିଥିଲେ କେମିତି ତାକୁ କ୍ଷୀର ପିଆଁଇବେ।

ତାଙ୍କର ମନେ ପଡ଼ିଥିଲା ଗତ ସପ୍ତାହରେ ମନୋଜବାବୁଙ୍କ ନାକ ବୁଜି ହୋଇ ଜୋର୍‌ରେ ଥଣ୍ଡା ଧରିଥିବାରୁ ସିଏ ଡ଼ାକ୍ତରଙ୍କୁ ପରାମର୍ଶ କରି ବଟିକା ଓ ନାକରେ ପକାଇବା ପାଇଁ ଡ୍ରପ୍ ଆଣିଥିଲେ। ସେଇ ଡ୍ରପରଟି ଏବେ କାମରେ ଲାଗିପାରିବ ଜାଣି ତାକୁ ଖୋଜି ଭଲ ଭାବରେ ଧୋଇ ସଫା କରି ନେଉଳ ଛୁଆର ମୁହଁକୁ ଉପରକୁ କରାଇ ଖୋଲି ଡ୍ରପର ସାହାଯ୍ୟରେ ବୁନ୍ଦା ବୁନ୍ଦା କ୍ଷୀର ତା' ପାଟିରେ ପକାଇଥିଲେ। ସିଏ ଢ଼ୋକିବାକୁ ଚେଷ୍ଟା କରି ଢ଼ୋକି ପାରୁନଥାଏ ଓ ପାଟି ବନ୍ଦ କଲାବେଳକୁ ପାଟିରୁ କ୍ଷୀର ବୋହିଯାଉଥାଏ ଏବଂ ନାକପୁଡ଼ା ଦେଇ କିଛି ବାହାରିଯାଉଥାଏ।

ଏସବୁ ଦେଖି ସୁନି କହିଥିଲା- "ସିଏ ତା' ମା'ଠୁ ଟାଣିକରି କ୍ଷୀର ପିଏତ ସେଥିପାଇଁ ତା ମୁହଁରେ ଢଳା କ୍ଷୀର ପିଇପାରୁନି।"

ମମତା ହତାଶ ହୋଇ ସୁନି ଆଡ଼େ ଚାହିଁ କହିଥିଲେ- ତା' ହେଲେ କ'ଣ କରିବା ?

ବୁଡ଼ିଯାଉଥିବା ଲୋକକୁ ଆଶ୍ୱାଦେଲା ପରି ସୁନି କହିଥିଲା- କ'ଣ ଆଉ କରିବ ? ବାଡ଼ ପାଖେ ତାକୁ ଛାଡ଼ିଦିଅ, ତା' ମା' ଆସି ତାକୁ ନେଇଯିବ। ତୁମେ ତାକୁ ନିଜ ପାଖେ ରଖିଲେ ସିଏ ଖାଦ୍ୟ ବିନା ଶୁଖି ଶୁଖି ମରିଯିବ।

ମମତା ଧର୍ମସଙ୍କଟରେ ପଡ଼ିଥିଲେ। ବାହାରେ ଛାଡ଼ିଦେଲେ ଯଦି ଜନ୍ତୁଜନ୍ତା ତାକୁ ଖାଇଦେବେ ? ଆଉ ନିଜ ପାଖରେ ରଖିଲେ ସତରେ ଯିଏ ସିଏ ଶୁଖି ଶୁଖି ମରିଯିବ ?

ଗଭୀର ଚିନ୍ତା କଲାପରେ ମମତା ବାଡ଼ପାଖରେ ଓଦା ମାଟି ଉପରେ କିଛି ଖବରକାଗଜ ରଖି ତା' ଉପରେ ତାକୁ ରଖି ଝୁଡ଼ିଟା ଘୋଡ଼ାଇ ଦେଇଥିଲେ ଏବଂ କାଳେ ବର୍ଷା ଆସିଲେ ଓଦା ହେଇଯିବ ଭାବି ଝୁଡ଼ି ଉପରେ ଜରି ରଖି ତା' ଉପରେ ଦୁଇଟା ଭଙ୍ଗା ଇଟା ଲଦିଦେଇ ଘରକୁ ଆସି ଝରକା ପଟେ ଦେଖୁଥିଲେ, ତା' ମା' କେତେବେଳେ ଆସିବ।

ତା ମା' ଆସିବାର କୌଣସି ଚିହ୍ନ ବର୍ଣ୍ଣ ନ ଦେଖି ମମତା ତାକୁ ଅପରାହ୍ନ

ଚାରିଟାବେଳେ ପୁଣି ଘରକୁ ନେଇଆସିଥିଲେ ଏବଂ ସେତିକିବେଳେ ଦେଖିଥିଲେ ସିଏ ଟିକେ ଟିକେ ଚାଲିବା ଆରମ୍ଭ କରି ଦେଇଛି । ବୋଧହୁଏ ଦ୍ୱିତୀୟ ଥର କ୍ଷୀର ପିଆଇଲା ବେଳେ କିଛି କ୍ଷୀର ତା' ପେଟକୁ ଯାଇଛି ।

ମମତା ତାକୁ ପୁଣି ସେଇ ଡ୍ରପର ସାହଯ୍ୟରେ କ୍ଷୀର ପିଆଇବାକୁ ଚେଷ୍ଟା କରିଥିଲେ ଓ ସିଏ ଢ଼ୋକିବା ଦେଖି ଖୁସିରେ ଫାଟି ପଡ଼ିଥିଲେ ।

ସଂଧ୍ୟାରେ ଯେତେବେଳେ ମନୋଜବାବୁ ଗାଁରୁ ଫେରିଥିଲେ ସ୍ୱଳ୍ପଭାଷୀ ମମତା କିଶୋରୀ ଝିଅଟିଏ ପରି ତାଙ୍କ ହାତ ଧରି ଟାଣି ଟାଣି ପଛ ବାଂରଣ୍ଡାକୁ ନେଇ ଚୌକିରେ ବସାଇ ନେଉଳଟିକୁ ଦେଖାଇ ସକାଳଠାରୁ ଏବେଯାଏ ଘଟିଥିବା ସମସ୍ତ ଘଟଣା ଶୁଣାଇଥିଲେ ।

ଶେଷରେ ତା'ର ନାଁ 'ଯାଦୁ' ରଖିଛନ୍ତି ଓ କାହିଁକି ରଖିଛନ୍ତି କହିସାରି ମନ୍ତ୍ରଚାଳିତ ପରି ମନୋଜବାବୁଙ୍କ ପାଇଁ ଚା' ବସାଇବା ପାଇଁ ରୋଷଇ ଘରକୁ ଯାଇଥିଲେ ।

ମନୋଜ ସ୍ତବ୍ଧ ହୋଇ ପତ୍ନୀଙ୍କ ଯିବା ବାଟକୁ ଚାହିଁ ରହିଥିଲେ । ତାଙ୍କୁ ଲାଗିଥିଲା ସତେ ଯେମିତି ସିଏ କୋଡ଼ିଏ ବର୍ଷ ତଳର ଚଞ୍ଚଳିଆ ତରୁଣୀ ମମତାଙ୍କୁ ଦେଖୁଛନ୍ତି ।

ଛୋଟିଆ ନେଉଳଟି ଆଡ଼କୁ ଦୃଷ୍ଟି ଫେରାଇ ମନୋଜ ଭାବିଲେ ଦୁର୍ବଳ, କୋମଳ, ଅସହାୟ ଦିଶୁଥିବା ନେଉଳଟି ମମତାଙ୍କ ମୁହଁରୁ ହଜିଯାଇଥିବା ହସକୁ ଫେରାଇ ଆଣିଛି । ସତରେ ମମତାଙ୍କୁ ଯାଦୁ କରିଦେଇଛି 'ଯାଦୁ' ।

ମନୋଜବାବୁ ଚୌକିରେ ବସି ତାକୁ କିଛି ସମୟ ନିରୀକ୍ଷଣ କରିବାପରେ ହଠାତ୍ ଚଟାଣରେ ବସିପଡ଼ି ବାମ ହାତର ବିଶି ଆଙ୍ଗୁଠିରେ ତା'ର ମଥାକୁ ସ୍ପର୍ଶ କରିଥିଲେ । ସେ ସ୍ପର୍ଶରେ କ'ଣ ଥିଲା କେଜାଣି ମନୋଜବାବୁଙ୍କ ମନଟି ହଠାତ୍ ସ୍ନେହସିକ୍ତ ହୋଇଯାଇଥିଲା ଓ ସିଏ ଡ଼ାହାଣ ହାତର ଆଙ୍ଗୁଳିରେ ବାରମ୍ବାର ତା'ର ପିଠିକୁ ସାଉଁଳିଥିଲେ ।

ତା' ପରଦିନଠାରୁ ବର୍ଷ ବର୍ଷ ଧରି ଶୂନ୍‌ଶାନ୍ ଥିବା ମନୋଜ ଓ ମମତାଙ୍କ ଘରଟି କୋଳାହଳରେ ଭରିଯାଇଥିଲା । ସକାଳୁ ରାତିଯାଏ ଘରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ 'ଯାଦୁ' ଥିଲା । ସେମାନଙ୍କ ଛୋଟିଆ ସଂସାରଟି ପାଲଟି ଯାଇଥିଲା ଯାଦୁମୟ ।

-ଆଜି ସକାଳେ 'ଯାଦୁ' ଝୁଡ଼ିରୁ ବାହାରି ଘର ଭିତରକୁ ଆସିଥିଲା ।

- 'ଯାଦୁ' ଚଢ଼େଇ ବୋବେଇଲା ଭଳିଆ ଅଦ୍‌ଭୂତ ଶବ୍ଦ କରୁଛି ।

- ଆଜି ସିଏ ଖାଇବାକୁ ଇଚ୍ଛା କରୁନି । ଇତ୍ୟାଦି ଇତ୍ୟାଦି ।

ସେମାନଙ୍କ ଆଦର ଯତ୍ନ ପାଇ 'ଯାଦୁ' ଧୀରେ ଧୀରେ ବଡ଼ ହେବାରେ ଲାଗିଲା । ଛୋଟ ପିଲା ମା' କାନି ଧରି ବୁଲିଲା ପରି ଯାଦୁ ଦିନସାରା ମମତାଙ୍କ ପଛେ ପଛେ

ବୁଲେ । ମନୋଜବାବୁ ସନ୍ଧ୍ୟାରେ ଅଫିସ୍‌ରୁ ଫେରିଲେ ସିଏ ଘଣ୍ଟେ ତାଙ୍କ କୋଳରେ ବସି ଗେଲ ହୁଏ ।

ସେମାବାର ଓ ଗୁରୁବାର ଆଇଁଷ ପଶୁନଥିବା ମମତାଙ୍କ ଘରେ ଯାଦୁ ପାଇଁ ଅଣ୍ଡା, ମାଛ ଆଦି ରନ୍ଧା ହେଉଥିଲା ।

କୌଣସି ଅତିଥି ଘରକୁ ଆସିଲେ ସ୍ୱାମୀ ସ୍ତ୍ରୀ ଦୁହେଁ ତାଙ୍କ ଆଗରେ ଯାଦୁକଥା ଗପିଚାଲନ୍ତି- କେମିତି ସିଏ ବୁଦ୍ଧିଆ ହେଇଛି ସେମାନଙ୍କ ପାଖରେ ଶୋଉଛି ଓ ସକାଳେ ସେମାନଙ୍କ ମହଁରେ ହାତ ମାରି ଉଠାଉଛି ।

ଯାଦୁ ବଡ଼ ହେଇଗଲା ପରେ ଘର ବାହାରକୁ ଯିବା ଆରମ୍ଭ କରିଦେଇଥିଲା । ଅବଶ୍ୟ ବଡ଼ ପାଟିରେ ତା' ନାଁ ଧରି ଡ଼ାକିଲେ ସିଏ ଯେଉଁଠି ଥିଲେ ବି ଘରକୁ ଆସିଯାଉଥିଲା ।

ଛ' ମାସ ପୂର୍ବେ ହଠାତ୍ ଦିନେ ବାହାରକୁ ବୁଲିଯାଇଥିବା ଯାଦୁ ଘରକୁ ଫେରିନଥିଲା । ପାଗଳ ପ୍ରାୟ ମମତା ଓ ମନୋଜ ତନ୍ନତନ୍ନ କରି ଖୋଜି ତାକୁ ଆଉ ପାଉ ନଥିଲେ ଓ ସେମାନଙ୍କ ଘରଟି ପୂର୍ବବତ୍ ଶୂନ୍‌ଶାନ୍ ହେଇଯାଇଥିଲା ।

କାନ୍ଦି କାନ୍ଦି ଶେଯରେ ଲାଗିଯାଇଥିବା ମମତାଙ୍କୁ ପଡ଼ୋଶୀ ଜୀବନ ବାବୁଙ୍କ ସହଧର୍ମିଣୀ ଆସି ବୁଝାଇ କହିଥିଲେ- ଜନ୍ମ କଲା ପୁଅଝିଅମାନେ ତ ବଡ଼ ହେଲାପରେ ବାପା ମା'ଙ୍କୁ ଛାଡ଼ି ଚାଲିଯାଉଛନ୍ତି । ଆଗ କାଳରେ କେବଳ ଝିଅମାନେ ଘରଛାଡ଼ି ଶାଶୁଘର ଯାଉଥିଲେ- ଆଜିକାଲି ତ ପୁଅମାନେ ବାହାହେଲା ପରେ ସ୍ତ୍ରୀକୁ ନେଇ ଅଲଗା ଘର କରି ରହୁଛନ୍ତି । ତାକୁ ତ ପୁଣି ସହି ରହିବାକୁ ପଡୁଛି । ଆଉ ତୁମେ ସାମାନ୍ୟ ନେଉଳଟେ ପାଇଁ କାହିଁକି ଏତେ ବ୍ୟସ୍ତ ହେଇଯାଉଛ ?

ଏ ସଂସାରର ସବୁ ନିୟମକୁ ଜାଣିଥିଲେ ବି ମମତା ନିଜ ମନକୁ ବୁଝାଇପାରୁନଥିଲେ ।

ସିଏ ଘରୁ ଚାଲିଯିବା ଦିନଠାରୁ ମମତାଙ୍କୁ ଦିନଟା ନିଛାଟିଆ ଓ ରାତିଟା ଖୁବ୍ ଲମ୍ବା ଲାଗୁଛି । ରାତି ଅଧରେ କୌଣସି ଆୱାଜ୍ ଶୁଣିଲେ ମନୋଜଙ୍କୁ ଉଠାଇ 'ଯାଦୁ' ଆସିଛି କହି ଧଡ଼ପଡ଼ ହେଇ ଯାଇ କବାଟ ଖୋଲନ୍ତି ।

ରାତିରେ ସ୍ୱପ୍ନ ଦେଖନ୍ତି- ଯାଦୁ ଫେରି ଆସି ଦୋଷୀ ପରି ତାଙ୍କ ଆଗରେ ମୁଣ୍ଡପୋତି ଠିଆ ହେଇଛି ଓ ସିଏ ନିଦରୁ ଉଠି ଶେଯ ଅଣ୍ଡାଳନ୍ତି ।

ଯାଦୁ ନିଖୋଜ ହେବାର ଆଜିକୁ ଠିକ୍ ଛ' ମାସ ହେଇଗଲା । ମମତାଙ୍କ ଛାତି ଥରାଇ ଦୀର୍ଘନିଶ୍ୱାସଟିଏ ବାହାରି ପଡ଼ିଲା ।

ଏଇ ସମୟରେ ଜୀବନବାବୁଙ୍କ ବାଡ଼ି ଆଡୁ ଚିହ୍ନା ଶବ୍ଦ ଶୁଣି ମମତା ଚମକି ପଡ଼ି

ବାଁ ପଟକୁ ଚାହିଁ ଯାହା ଦେଖିଲେ ନିଜ ଆଖିକୁ ବିଶ୍ୱାସ କରିପାରିଲେନି । ତାଙ୍କୁ ଜଣାଗଲା ସିଏ ଦିନଟାରେ ଆଖି ଖୋଲି ସ୍ୱପ୍ନ ଦେଖୁଛନ୍ତି ।

କିନ୍ତୁ ନା ଏହା ସତ୍ୟ ଥିଲା । ଯାଦୁ ତାଙ୍କରି ଆଡ଼କୁ ଚାଲି ଚାଲି ଆସୁଛି ଏବଂ ତାକୁ ଅନୁସରଣ କରି ତା' ପଛରେ ଦୁଇଟି ନେଉଳ ଶାବକ !

ମଧ୍ୟବୟସ୍କା ମମତା ଚୌକିରୁ ଉଠିପଡ଼ି ଛୋଟ ଝିଅଟେ ପରି ତା' ପାଖକୁ କ୍ଷିପ୍ର ଗତିରେ ଦଉଡ଼ିଥିଲେ ଓ ଘର ଭିତରେ ଥିବା ମନୋଜଙ୍କ ଉଦ୍ଦେଶ୍ୟରେ ବଡ଼ ପାଟିରେ କହିଥିଲେ- ଦେଖ ଦେଖ କିଏ ଆସିଛି - ମୁଁ କହିଥିଲି ନା ସିଏ ନିଶ୍ଚେ ଦିନେ ଫେରିଆସିବ ।

ମମତାଙ୍କ ଉଚସ୍ୱର ଶୁଣି ମନୋଜବାବୁ ପଢୁଥିବା ଖବର କାଗଜଟିକୁ ଖଟ ଉପରେ ପକେଇଦେଇ ଶୋଇବା ଘର ଝରକା ଦେଇ ଦେଖିଲେ- ମମତା ବାଡ଼ି ପାଖର କାକର ଭିଜା ଘାସରେ ବସିପଡ଼ି ଦୁଇ ହାତରେ ଯାଦୁକୁ ଟେକି ଧରି ନିଜ ଗାଲରେ ଚାପି ଧରିଛନ୍ତି ଓ ଆଖିରୁ ଧାର ଧାର ଲୁହ ଝରିପଡୁଛି ଓ ମମତାଙ୍କ ଅନତି ଦୂରରେ ଦୁଇ ଶିଶୁ ନେଉଳ ।

ମନୋଜ ବାବୁ ଚଷମା ଖୋଲି ନିଜର ଆନନ୍ଦାଶ୍ରୁ ପୋଛିଥିଲେ ଓ ଯାଦୁ ନିରୁଦ୍ଦିଷ୍ଟ ହେବାର କାରଣଟା ତାଙ୍କ ଆଖିରେ ସ୍ପଷ୍ଟ ହେଇଯାଇଥିଲା ।

# ଆଇନା

ଅଭିଳାଷ ଅଧ୍ୟାପନା ସାରି କଲେଜରୁ ଫେରି ଘରର ବାଟ ମୁହଁରେ ସ୍କୁଟରଟି ରଖି କଲିଂବେଲ୍ ବଜାଇଲେ । ପତ୍ନୀ ଆଶା ଟଳି ଟଳି କବାଟଟି ଖୋଲି ଦେଇ ଶୋଇବା ଘରକୁ ଯାଇ ପୁଣି ଖଟରେ ଗଡ଼ିପଡ଼ିଲେ ।

ଅଭିଳାଷ ତାଙ୍କୁ ଅନୁସରଣ କରି ଶୋଇବା ଘରେ ଥିବା ତାଙ୍କ ପଢ଼ା ଟେବୁଲ୍ ଉପରେ ସାଂଗରେ ଆଣିଥିବା ବହି ଦୁଇଟିକୁ ରଖିଦେଇ ଆଶାଙ୍କ କପାଳରେ ହାତ ମାରି ଦେଖିଲେ, ଆଜି ବି ଜର ଅଛି ।

ବୟସ ପଚାଶ ପାଖାପାଖି ହେଇଥିଲେ ବି ଲୋଟଣୀ ପାରା ପରି ଖଟୁଥିବା ଆଶା ଏବେ ଦେହର ଅସୁସ୍ଥତା ଯୋଗୁ ଅତିକଷ୍ଟରେ ଦୁଇଜଣଙ୍କ ପାଇଁ ରୋଷେଇଟି ସାରିଦେଇ ପ୍ରାୟ ଖଟରେ ପଡ଼ି ରହୁଛନ୍ତି । ସ୍ୱାମୀଙ୍କୁ କୌଣସି ଅଭିଯୋଗ କରୁନାହାନ୍ତି କି ହାଇଦ୍ରାବାଦରେ ରହୁଥିବା ପୁଅ, ବୋହୂଙ୍କୁ ମଧ୍ୟ ନିଜ ଦେହ ବିଷୟରେ କିଛି ଜଣାଇନାହାନ୍ତି ।

ଗତ ଦୁଇମାସ ହେଲାଣି ଆଶାଙ୍କର ବାମ ଆଣ୍ଠୁଟା ଦରଜ ହେଇ ଫୁଲି ରହିଛି ।ଏଇ ବୟସରେ ଏମିତି ହୁଏ ଭାବି ପ୍ରଥମେ ଅମୃତାଞ୍ଜନ, ଆୟୋଡେକ୍ସ ଓ ପଂଚଗୁଣା ତେଲ ଆଦି ମାଲିସ୍ କରି ମାସେ ବିତାଇଥିଲେ । ସେଥିରେ କୌଣସି ଉପଶମ ନହେବାରୁ ଅନ୍ୟମାନଙ୍କଠାରୁ ଶୁଣି ଗରମ ସେକ ଦେଇ ନି' କ୍ୟାପ୍ ପିନ୍ଧିଥିଲେ । କିନ୍ତୁ ସେଥିରେ ମଧ୍ୟ କୌଣସି ଫରକ ପଡିନଥିଲା ।

ଏବେ ପନ୍ଦର ଦିନ ହେଲାଣି ଆଣ୍ଠୁ ବଥା ସାଂଗକୁ ଦେହରେ ସାମାନ୍ୟ ଜର ହେଇ ଭାରି ଦୁର୍ବଳିଆ ଲାଗୁଛି ।

ଅଭିଳାଷ ଯେବେଠାରୁ ବିଭାଗୀୟ ମୁଖ୍ୟ ହେଲେଣି ସେବେଠାରୁ କଲେଜରେ ବ୍ୟସ୍ତ ରହି ଘର ପାଇଁ ଦୃଷ୍ଟି ଦେଇ ପାରୁ ନାହାନ୍ତି ଏବଂ ସେହି କାରଣରୁ ଆଶାଙ୍କୁ ଏବେଯାଏ

ଡାକ୍ତର ଦେଖାଇବା ପାଇଁ ନେଇ ପାରୁନାହାନ୍ତି ।

ଭଗବାନଙ୍କ ଦୟାରୁ ଏବେଯାଏ ତାଙ୍କର ଡାକ୍ତରଙ୍କ ପାଖକୁ ଯିବା ଦରକାର ପଡିନଥିଲା । ପୁଅ ଛୋଟ ଥିଲାବେଳେ କେବେ କେମିତି ଥଣ୍ଡା, କାଶ ହେଲେ ପାଖରେ ଥିବା ହୋମିଓପାଥି ଡାକ୍ତରଙ୍କୁ ଦେଖାଇ କାମ ଚଳାଇ ଦେଉଥିଲେ ।

ଛବିଶ ବର୍ଷ ପୂର୍ବେ ପୁଅ ଜନ୍ମ ବେଳକୁ ଯାହା ଡାକ୍ତରଖାନା ଯାଇଥିଲେ । ସେତେବେଳେ ଭାଗ୍ୟକୁ ତାଙ୍କ ସାଂଗ ସଚ୍ଚି କଟକ ମେଡିକାଲରେ ହାଉସ୍ ସର୍ଜନ ଥିଲା ଓ ତାରି ସାହାଯ୍ୟ, ସହାୟତାରେ ବିଶେଷ ହଇରାଣ ନହେଇ ଆଶାଙ୍କର ଡେଲିଭରୀ ହେଇଥିଲା । ଏବେ ସଚ୍ଚି ଏ ସହରର ଦକ୍ଷ ହୃଦରୋଗ ବିଶେଷଜ୍ଞ ।

ସହରର ଅନ୍ୟ କୌଣସି ଡାକ୍ତରଙ୍କୁ ଚିହ୍ନି ନଥିବାରୁ ସନ୍ଧ୍ୟାରେ ଅଭିଳାଷ ପତ୍ନୀଙ୍କୁ ସ୍କୁଟରରେ ସଚ୍ଚିଙ୍କ କ୍ଲିନିକ୍‌କୁ ନେଲାବେଳେ ଭାବିଲେ - ସଚ୍ଚି ଏବେ ସିନା ହୃଦ୍ ବିଶେଷଜ୍ଞ ହେଇଛି । ଏମ୍ ବି ବି ଏସ୍ ପଢ଼ିଲା ବେଳେ ସାରା ଶରୀରର ବେମାରି ବିଷୟରେ ତ ପଢ଼ିଥିବ । ତେଣୁ ରୋଗ ଚିହ୍ନି ଔଷଧ ଲେଖିଦେଲେ ବଟିକା ଖାଇ ଆଶା ଆରୋଗ୍ୟ ହେଇଯିବେ !

ସାତଟାରେ ଡାକ୍ତର ସଚ୍ଚି ମିଶ୍ରଙ୍କ ଘରୋଇ ଚିକିତ୍ସାଳୟରେ ପହଞ୍ଚି ଦେଖିଲେ ସେଠି ରୋଗୀ ଓ ସେମାନଙ୍କ ସହଚରମାନଙ୍କ ଭିଡ଼ରେ ପ୍ରତୀକ୍ଷା ଗୃହ ଓ ବାହାର ବାରଣ୍ଡାଟି ଲୋକାରଣ୍ୟ ହେଇଛି ଯଦିଓ ସେତେବେଳେ ଯାଏ ଡାକ୍ତର ସଚ୍ଚି ଆସି ପହଞ୍ଚି ନଥିଲେ ।

ପ୍ରତୀକ୍ଷା ଗୃହରେ ଅପେକ୍ଷା କରିଥିବା ଜଣେ ତରୁଣ ଭଦ୍ରବ୍ୟକ୍ତିଙ୍କୁ ଅନୁରୋଧ କରି ଗୋଟିଏ ଚୌକି ଖାଲି କରାଇ ସେଠାରେ ଅଧିକ ସମୟ ଛିଡା ହେଇ ରହିପାରୁନଥିବା ଆଶାଙ୍କୁ ବସାଇଦେଇ ନିଜେ ବାହାରକୁ ଆସି ବନ୍ଧୁଙ୍କ ଆଗମନକୁ ଅପେକ୍ଷା କରି ବାରମ୍ବାର - ହାତ ଘଣ୍ଟାକୁ ଦେଖି ଏପଟ ସେପଟ ହେବାକୁ ଲାଗିଲେ ।

ପ୍ରାୟ ସାଢ଼େ ସାତଟା ବେଳେ ଡ୍ରାଇଭର ଚଳାଉଥିବା ଧଳା ମାରୁତି ଏଷ୍ଟିମ୍‌ରେ ଡାକ୍ତର ମିଶ୍ର ଆସି ପହଞ୍ଚିଲେ । ଗାଡି ବ୍ରେକ୍ ଦେଉ ଦେଉ ଧଳା ସାର୍ଟପ୍ୟାଣ୍ଟ୍ ପିନ୍ଧା ଯୁବକଟିଏ ଦୌଡ଼ି ଯାଇ ହାତଯୋଡି - ସାର୍ ନମସ୍କାର କହି ନଇଁପଡି ଗାଡିର ପଛ ଦରଜା ଖୋଲିଲା ପରେ କାର୍ଡିଓଲୋଜିଷ୍ଟ ଗାଡିରୁ ଓହ୍ଲାଇଲା ବେଳକୁ ଆଗସିଟ୍‌ରୁ ଡ୍ରାଇଭର ବାହାରି ଆଟାଚିଟିଏ ସେଇ ଯୁବକ ହାତକୁ ବଢ଼ାଇ ପୁଣି ଗାଡିଟି ଡ୍ରାଇଭ୍ କରି ଟିକେ ଆଗରେ ପାର୍କିଂ କଲା ।

ଡାକ୍ତର ମିଶ୍ରଙ୍କୁ ଅନୁସରଣ କରି ଯୁବକଟି ବାରଣ୍ଡା ଆଡକୁ ବଢ଼ିଥିଲା । ଅପେକ୍ଷା କରିଥିବା ଲୋକମାନେ ଠିଆହୋଇ ଜଣକ ପରେ ଜଣେ ଡାକ୍ତର ମିଶ୍ରଙ୍କୁ ସସମ୍ମାନ ନମସ୍କାର କରିଥିଲେ ଓ ଡାକ୍ତର ସଚ୍ଚି ଡାହାଣ ହାତକୁ ସାମାନ୍ୟ ଉପରକୁ ଉଠାଇ, ସହାସ୍ୟ ବଦନରେ ପ୍ରତିନମସ୍କାର ଜଣାଉଥିଲେ ।

ଅଭିଳାଷ ଦେଖିଲେ ପ୍ରାୟ ଦୁଇ ବର୍ଷ ପୂର୍ବେ ନିଜ ପୁଅ ବିଭାଘର ବେଳେ ଦେଖିଥିବା ସଚ୍ଚିଙ୍କର ସଫେଦ୍ ପଡି ଆସୁଥିବା ଚୁଟି ଏବେ ପୂରା କଳା । କିନ୍ତୁ ଖାଦ୍ୟପ୍ରିୟ ହେତୁ ବେଶ୍ ମେଦ ବୃଦ୍ଧି ଘଟି ସ୍ଫିତ ଉଦରଟି ମାଧ୍ୟାକର୍ଷଣ ଶକ୍ତିକୁ ଅବମାନନା ନକରି ପାରି ସାମାନ୍ୟ ତଳକୁ ଝୁଲି ପଡିଛି ଓ ଦୃଢ଼ଭାବରେ ବନ୍ଧା ହୋଇଥିବା ଅଣ୍ଟାର ବେଲ୍‌ଟ୍‌ଟି ପ୍ୟାଣ୍ଟକୁ ସ୍ୱସ୍ଥାନରେ ରଖି ପାରିଛି ।

ଏତେ ଭିଡ଼ରେ ଅଭିଳାଷ ତାଙ୍କୁ ନାମ ଧରି ଡାକିବେ କି ନାହିଁ ବୋଲି ଦୋ, ଦୋ, ପାଞ୍ଚ ହେଲାବେଳକୁ ସଚ୍ଚି ତାଙ୍କୁ ଅକସ୍ମାତ୍ ଦେଖିସାରି ଖୁସିରେ ତାଙ୍କ ହାତକୁ ଧରି କହିଲେ - ଆରେ ଅଭି, ତୁ ଏଠି ?

ଅଭି କିଛି କହିବା ଆଗରୁ ପ୍ରତୀକ୍ଷା ଗୃହରେ ଆଶାଙ୍କୁ ଦେଖି ନମସ୍କାର କରି - " ତୁ ଭାଉଜଙ୍କୁ ଭିତରେ କାହିଁକି ନ ବସାଇ ଏଠି ବସାଇଛୁ" କହି ଦୁହିଁଙ୍କୁ ନିଜ ଚ୍ୟାମ୍ବରକୁ ଡାକି ନେଲେ ।

ନିଜେ ଘୂରା ଚୌକିରେ ବସିପଡି ତାଙ୍କ ଟେବୁଲ୍ ସାମନାରେ ପଡିଥିବା ଚୌକିରେ ସେମାନଙ୍କୁ ବସାଇ ଆସିବାର କାରଣ ଜିଜ୍ଞାସା କରିଥିଲେ ।

ଅଭିଳାଷଙ୍କ ଠାରୁ ଆଶାଙ୍କ ବେମାରିର ଇତିହାସ ଶୁଣିଲା ପରେ କହିଲେ- ମୋର ଯାହା ମନେ ପଡୁଛି ଭାଉଜଙ୍କ ହାର୍ଟରେ ଗୋଟେ ସିଷ୍ଟୋଲିକ୍ ମର୍ମର ଥିଲା ଯେଉଁଟାକି ଗର୍ଭାବସ୍ଥାରେ ଜଣା ପଡିଥିଲା ।

ଅଭି ମନେ ମନେ ସଚ୍ଚିଙ୍କ ସ୍ମରଣ ଶକ୍ତିକୁ ତାରିଫ କରି ମୁଣ୍ଡ ଟୁଙ୍ଗାରିଲେ ।

ତାପରେ ସଚ୍ଚି କହିଲେ - ମୋର ସନ୍ଦେହ ହେଉଛି ଭାଉଜଙ୍କର ବାକ୍ଟେରିଆଲ୍ ଏଣ୍ଡୋକାଡାଇଟିସ୍ ହୋଇଛି ।

ଅଭି ଓ ଆଶାଙ୍କ ହାବଭାବରୁ ସେମାନେ କିଛି ବୁଝି ପାରୁନଥିବା ଅନୁମାନ କରି ସେମାନଙ୍କୁ ବେମାରି ବିଷୟରେ ସରଳ ଭାଷାରେ ବୁଝାଇ ଦେବା ପାଇଁ କହିଲେ - ଭାଉଜଙ୍କ ହୃତ୍‌ପିଣ୍ଡରେ ଥିବା ଭାଲ୍‌ଭ ପ୍ରଥମରୁ ଦୋଷଯୁକ୍ତ ଥିଲା । ଦୋଷଯୁକ୍ତ ଭାଲଭ୍‌କୁ ଜୀବାଣୁମାନେ ଅତି ସହଜରେ ଆକ୍ରମଣ କରନ୍ତି । ଭାଉଜଙ୍କ ହୃତ୍‌ପିଣ୍ଡରେ ଇନ୍‌ଫେକ୍‌ସନ୍ ହୋଇଥିବାରୁ ଜର, ଆଣ୍ଠୁବଥା ସହ ଦୁର୍ବଳିଆ ଲାଗୁଛି ।

ଅଭି ଆଶ୍ଚର୍ଯ୍ୟ ହେଲେ - ବିନା ପରୀକ୍ଷାରେ ସଚ୍ଚି କି ସୁନ୍ଦର ରୋଗ ଧରିପାରୁଛି । ସେଇଥିପାଇଁ ସିନା ଦକ୍ଷ କାର୍ଡିଓଲୋଜିଷ୍ଟ ହୋଇଛି ! !

ଅଭିଙ୍କ ଭାବନାରେ ବାଧାଦେଇ ସଚ୍ଚି କହିଲେ - ତେବେ ଭାଉଜଙ୍କର ଗୋଟେ ଟୁଡି ଇକୋ କରିବାକୁ ପଡିବ । ତୁ କାଲି ସକାଳେ ମଙ୍ଗଳାବାଗ୍‌ରେ ଥିବା 'ହୃଦୟ' ଡାଏଗ୍ନୋଷ୍ଟିକ୍‌କୁ ଭାଉଜଙ୍କୁ ନେଇ ସେଠାରେ ଏଇ ଟେଷ୍ଟ କରାଇ ରିପୋଟ୍ ନେଇ ଆସିବୁ ।

ଏଇ ଟେଷ୍ଟ ପାଇଁ ଅବଶ୍ୟ ତତେ ଦେଢ଼ ହଜାର ଟଙ୍କା ଖର୍ଚ୍ଚ କରିବାକୁ ପଡିବ କିନ୍ତୁ ଡାଏଗ୍ନୋସିସ୍ କନ୍‌ଫର୍ମ ହେଇଯିବ ।

ତାପରଦିନ ଅଭିଳାଷ କଲେଜ ପ୍ରିନ୍‌ସିପାଲଙ୍କ ପାଖକୁ ଛୁଟି ଦରଖାସ୍ତ ପଠାଇ ସାଂଗରେ ଆଶାଙ୍କୁ ଓ ଟଙ୍କା ଧରି 'ହୃଦୟ' କୁ ଯାଇ ସେଠାରେ ଚାରିଘଣ୍ଟା କାଳ ଅପେକ୍ଷା କରି ଟେଷ୍ଟ୍‌ଟି କରାଇ ଦୁଇ ପହର ବେଳକୁ ଘରକୁ ଫେରିଥିଲେ ।

ସନ୍ଧ୍ୟାରେ ଅଭି ରିପୋର୍ଟ ଧରି ସଚ୍ଚିଙ୍କ ପାଖକୁ ଗଲେ ।

ଟୁ ଡି ଇକୋର ରିପୋର୍ଟକୁ ତନ୍ନ ତନ୍ନ କରି ଦେଖିସାରି ଅଭିଙ୍କ ହାତକୁ ବଢ଼ାଇ ଦେଉ ଦେଉ ସଚ୍ଚି କହିଲେ - ଯାହାହେଉ ଲମ୍ବା ଟ୍ରିଟ୍‌ମେଣ୍ଟ୍‌ରୁ ଭାଉଜ ରକ୍ଷା ପାଇଗଲେ । ତାଙ୍କ ହାର୍ଟରେ କୌଣସି ଭେଜିଟେସନ୍ ନାହିଁ, ମାନେ ବାକ୍ଟେରିଆଲ୍ ଏଣ୍ଡୋକାଡାଇଟିସ୍ ନାହିଁ ।

ତାପରେ ଟିକେ ଚିନ୍ତା କରି କହିଥିଲେ - ଯେହେତୁ ଭାଉଜଙ୍କ ଦେହରେ ଅନୁଚ୍ଚ ଉତାପ ରହୁଛି ତେଣୁ ଛାତି ବିଶେଷଜ୍ଞ ଡାକ୍ତର ପଣ୍ଡାଙ୍କୁ ଦେଖାଇଦେବାଟା ଭଲ ହେବ ।

ଗୋଟିଏ କାଗଜରେ ପଣ୍ଡାଙ୍କର ସାଆନ୍ତସାହି ଘର ଠିକଣାଟି ଲେଖି ଅଭିଙ୍କ ହାତକୁ ବଢ଼େଇ କହିଲେ - ଡାକ୍ତର ପଣ୍ଡା ନିଜ ଘରେ ରୋଗୀ ଦେଖନ୍ତି । ତେଣୁ ତୁ ଆଜି ତାଙ୍କ ସହିତ ପରାମର୍ଶ କର ।

ଅଭି ଆଶ୍ଚର୍ଯ୍ୟ ହୋଇ ପଚାରିଲେ - ତୁ ପରା କହିଲୁ ହାର୍ଟରେ କୌଣସି ଅସୁବିଧା ନାହିଁ - ପୁଣି ଛାତି ବିଶେଷଜ୍ଞଙ୍କୁ ଦେଖାଇବା କ'ଣ ଏକାନ୍ତ ଆବଶ୍ୟକ ?

ବନ୍ଧୁଙ୍କ ପ୍ରଶ୍ନର ଉତ୍ତରରେ ସିଏ କହିଲେ - ଆରେ ଛାତିରେ କ'ଣ ଖାଲି ହୃତପିଣ୍ଡ ଅଛି, ତାର ଦୁଇ ପାଖରେ ଫୁସ୍‌ଫୁସ୍ ବି ଅଛି ।

ମନରେ ଉଙ୍କି ମାରୁଥିବା ପ୍ରଶ୍ନ ସବୁ ପଚାରିଲେ କାଳେ ସଚ୍ଚି ତାଙ୍କୁ ନିର୍ବୋଧ ଭାବିବେ ଚିନ୍ତା କରି ଅଭି ଚୁପ୍ ହୋଇ ସେଠାରୁ ଉଠିଲେ ଓ ଆଶାଙ୍କୁ ସାଂଗରେ ନେଇ ଡାକ୍ତର ପଣ୍ଡାଙ୍କ ଘରକୁ ଗଲେ ।

ତରୁଣ ତଥା ସୁଦର୍ଶନ ଛାତି ବିଶେଷଜ୍ଞ ଡାକ୍ତର ପଣ୍ଡା ପ୍ରାୟ ପନ୍ଦର ମିନିଟ୍ କାଳ ଆଶାଙ୍କର ବଂଶଗତ, ବ୍ୟକ୍ତିଗତ ଓ ନିଜ ଅଭ୍ୟାସ ଆଦି ବିଷୟରେ ପୁଙ୍ଖାନୁପୁଙ୍ଖ ପଚାରି ପ୍ରଥମେ ଆଣ୍ଠୁକୁ ଓ ପରେ ଷ୍ଟେଥୋ ପକାଇ ଛାତିକୁ ପରୀକ୍ଷା ପରେ ଛାତି ଓ ଆଣ୍ଠୁର ଏକ୍‌ସ୍‌-ରେ ସହିତ ଇ. ଏସ୍. ଆର୍, ପି. ପି.ଡି ଓ ଏଲାଇସା ଆଦି ଟେଷ୍ଟ ଗୁଡ଼ିକ କରିବାକୁ ପଡିବ ବୋଲି କହି ନିଜ ନାମାଙ୍କିତ କାଗଜରେ ଲେଖିଲେ । ଅଭିଳାଷଙ୍କ ହାତକୁ କାଗଜଟି ବଢ଼ାଇବାବେଳେ ଡାକ୍ତର ପଣ୍ଡା ମଙ୍ଗଳାବାଗ୍‌ରେ ଥିବା ଡାଏଗ୍ନୋଷ୍ଟିକ୍ ସେଣ୍ଟର'ରେ ଏହି

ସବୁ ଟେଷ୍ଟ କରାଇବା ପାଇଁ ଜୋର ଦେଇ କହିଥିଲେ ।

ଅଭିଳାଷ ତାଙ୍କ ହାତରୁ କାଗଜ ଖଣ୍ଡିକ ନେଇ ଫିସ୍ ବାବଦରେ ଦୁଇଶହ ଟଙ୍କା ବଢ଼ାଇଦେଇ ସେଠାରୁ ଉଠିଥିଲେ ଓ ତା ପରଦିନ ପୁଣି କଲେଜରୁ ତିନିଦିନ ଛୁଟି ଆଣି ବେଶ୍ କିଛି ଟଙ୍କା ଖର୍ଚ୍ଚ କରି ସିଏ କହିଥିବା ଜାଗାରେ ଆଶାଙ୍କର ସବୁ ପରୀକ୍ଷା କରାଇ ତୃତୀୟ ଦିନ ଡାକ୍ତର ପଣ୍ଡାଙ୍କ ପାଖକୁ ଯାଇଥିଲେ ।

ରିପୋର୍ଟ୍ ସବୁ ଦେଖିସାରି ଡାକ୍ତର ପଣ୍ଡା କହିଲେ - ଇ. ଏସ୍. ଆର୍‌କୁ ଛାଡ଼ିଦେଲେ ବାକୀ ସବୁ ରିପୋର୍ଟ ପ୍ରାୟ ଠିକ୍ ଅଛି । ତେବେ ଯେହେତୁ ହାଇ ଇ. ଏସ୍. ଆର୍. ସାଂଗକୁ ଗୋଟିଏ ବଡ ଗଣ୍ଠି ଧରି ଜର ହେଉଛି ତେଣୁ ଟ୍ୟୁବରକୁଲାର ଆରଥ୍ରାଇଟିସ୍ ହେବାର ବେଶୀ ସମ୍ଭାବନା ରହୁଛି । କେବେ କେବେ ସଠିକ ପ୍ରମାଣ ନମିଳିଲେ ମଧ୍ୟ ଆମକୁ ଏ. ଟି. ଟି (ଆଣ୍ଟି ଟ୍ୟୁବରକୁଲାର ଥେରାପି) ଦେବାକୁ ପଡେ, ଯାହାକୁ କି ମେଡିକାଲ ଟର୍ମ ଅନୁସାରେ ଥେରାପିଉଟିକ୍ ଟ୍ରାୟାଲ ଅଫ ଏ ଟି ଟି କୁହାଯାଏ ।

ତେବେ ଟିବି ଔଷଧ ଆରମ୍ଭ କରିବା ପୂର୍ବରୁ ଆପଣ ରାଣୀହାଟରେ କ୍ଲିନିକ୍ କରଥିବା ଶଲ୍ୟ ଚିକିତ୍ସକ ଡାକ୍ତର ନନ୍ଦଙ୍କୁ ଦେଖାଇ ଆଣିଲେ ଭଲ ହେବ ।

ଅଭିଳାଷ ଆଶାଙ୍କର ସବୁ ରିପୋର୍ଟକୁ ସଜାଡି ଯତ୍ନ ସହକାରେ ଫାଇଲ୍ ଭିତରେ ରଖି ଭାରି ମନରେ ଡାକ୍ତର ପଣ୍ଡାଙ୍କଠାରୁ ବିଦାୟ ନେଇ ଘରକୁ ଫେରିଲେ ଓ ଆଶାଙ୍କୁ ଯକ୍ଷ୍ମା ଔଷଧ ଖାଇବା ବିଷୟରେ କିଛି ନକହି ଗଣ୍ଠି ଡାକ୍ତରଙ୍କ ପରାମର୍ଶ ନେବାକୁ ପଡିବ ବୋଲି ଜଣାଇଲେ ।

ସେଦିନ ରାତିରେ ଖବର କାଗଜ ଉପରେ ଆଖି ପକାଇଲା ବେଳେ ଅଭିଳାଷ ଦେଖିଲେ - "ଆପଣଙ୍କ ସହରରେ ଖ୍ୟାତନାମା ଡାକ୍ତର" ଶୀର୍ଷକ ଶିରୋନାମାରେ ବାହାରିଛି - ବ୍ରହ୍ମପୁରର ବିଖ୍ୟାତ ଅସ୍ଥି ଶଲ୍ୟ ବିଶେଷଜ୍ଞ ଡାକ୍ତର ରବୀନ୍ଦ୍ରନ୍ ପ୍ରତି ରବିବାର ଦିନ ସକାଳେ ଓ ସନ୍ଧ୍ୟାରେ 'ସୁରକ୍ଷା' ହୋଟେଲ୍‌ରେ ରୋଗୀ ଦେଖୁଛନ୍ତି ।

ତା ପରିଦିନ ରବିବାର ଥିବାରୁ ପତି, ପତ୍ନୀ ଦୁହେଁ ଦିନ ନ' ଟାରେ ସୁରକ୍ଷା ହୋଟେଲ୍ ଯାଇ ଦେଖିଲେ ସେଠି ଡାକ୍ତର ରବୀନ୍ଦ୍ରନ୍‌ଙ୍କୁ ସାକ୍ଷାତ କରିବା ପାଇଁ କ୍ରମିକ ନମ୍ବର ଦିଆହେଉଛି । ଅଭିଳାଷ ସେ ଭିଡ ଭିତରେ ପଶି ପାଞ୍ଚଶହ ଟଙ୍କା ଜମାଦେଇ ସନ୍ଧ୍ୟା ସମୟର ଶେଷ ଟିକେଟଟି ପାଇ ଘରକୁ ଫେରିଲେ ।

ସେଇ ରବିବାର ରାତି ଆଠଟାବେଳେ ଆଦିମ ଅଧିବାସୀ ଭଳି ଦିଶୁଥିବା ଡାକ୍ତର ରବୀନ୍ଦ୍ରନ ରୋଗର ଲକ୍ଷଣ, ଛାତି ଡାକ୍ତରଙ୍କ ମତାମତ ଶୁଣି ସାରି ଏବଂ ସବୁ ରିପୋର୍ଟ ଦେଖିଲା ପରେ ଆଶାଙ୍କ ଆଣ୍ଠୁକୁ ଅନାଇ, ଛୁଇଁ, ଭାଙ୍ଗି, ଚାପଦେଇ ବିଭିନ୍ନ ପ୍ରକାର ପରୀକ୍ଷା ନିରୀକ୍ଷା କଲାପରେ ବାଜି ମାରିଲା ପରି କହିଲେ - ମୁଁ ଗ୍ୟାରେଣ୍ଟି ଦେଇ କହୁଛି

ଏହା ଟି.ବି. ନୁହେଁ ।

ଅଭିଳାଷଙ୍କ ମୁଣ୍ଡରୁ ଗୋଟେ ବୋଝ ଉତୁରି ଗଲାପରି ଲାଗିଲା ଓ ସିଏ ପଚାରିଲେ - ତାହାଲେ ଏ ବେମାରି କ'ଣ ?

ଡାକ୍ତର ରବୀନ୍ଦ୍ରନ୍ କହିଲେ - ଏହା ଏକ ଡିଜେନେରିଟିଭ୍ ଡିଜିଜ୍ । କୌଣସି କାରଣରୁ ସାଇନୋଭାଇଟିସ୍ ଓ ବର୍ଷାଇଟିସ୍ ହୋଇ କିଛି ପାଣି ଗଣ୍ଠି ଭିତରେ ଜମିଯାଇଛି । ଏହାକୁ କାନ୍ଦିବା ଗଣ୍ଠି ବା ଓ୍ୱିପିଙ୍ଗ ଜଏଣ୍ଟ୍ କୁହାଯାଏ । ମୁଁ କିଛି ବଟିକା ଲେଖିଦେଉଛି ଓ ଗୋଡ ମାଂସପେଶୀର କେତୋଟି କସରତ (କ୍ୱାଡ୍ରିସେପ୍ସ ଏକ୍‌ସରସାଇଜ୍) ବତାଇ ଦେଉଛି । ଯେଉଁଟା କି ସିଏ ବସିବା ବେଳେ ଶୋଇବା ବେଳେ ବା ଠିଆ ହୋଇଥିବା ବେଳେ କରିପାରିବେ ।

କାଗଜଟି ଅଭିଳାଷଙ୍କୁ ବଢ଼ାଇ ଦେଲାବେଳେ କହିଲେ - ଯେହେତୁ ଦେହରେ ଜ୍ୱର ରହୁଛି ତେଣୁ ଆଣ୍ଠୁର ଏମ୍. ଆର. ଆଇଟା କରିଦେଲେ ଆମେ ନିଶ୍ଚିତ ହେଇଯିବା ଯେ ସି.ଏ ମାନେ କ୍ୟାନ୍‌ସର୍ ନାହିଁ । ଆପଣ ଆସନ୍ତା ଶନିବାର ଦିନ ଏଇ ହୋଟେଲ୍‌କୁ ଲାଗିଥିବା ଇଉରେକା ଡାଏଗ୍ନୋଷ୍ଟିକ୍‌ରେ ଏମ୍. ଆର୍. ଆଇଟା କରାଇ ଦିଅନ୍ତୁ ତାହେଲେ ତା ପରଦିନ ମୁଁ ରିପୋର୍ଟଟା ଦେଖିଦେବି ।

କ୍ୟାନ୍‌ସର୍ ନାଁ ଶୁଣି ଡରିଯାଇ ବିଷାଦ ମନରେ 'ରବୀନ୍ଦ୍ରନ୍' ଙ୍କ ପାଖରୁ ବାହାରି ଅଭିଳାଷ 'ଇଉରେକା' କୁ ଯାଇ ଏମ୍ ଆର୍ ଆର୍ ଆଇ ପାଇଁ ଆଠ ହଜାର ଟଙ୍କା ଲାଗିବ ଜାଣି ଘରକୁ ଫେରିଲେ ।

ଆଶାଙ୍କ ଶତ ବାରଣ ସତ୍ତ୍ୱେ ଅଭଳାଷ ବ୍ୟାଙ୍କରୁ ଆଠ ହଜାର ଟଙ୍କା ଉଠାଇ ଶନିବାର ଦିନ ଏମ୍. ଆର୍. ଆଇ କରାଇଥିଲେ ।

ରବିବର ଦିନ ରିପୋର୍ଟ୍ ଦେଖି ସବୁ ଠିକ୍ ଅଛି ଓ ସେହି ଔଷଧ ଦୁଇମାସ ଚାଲିବ ଶୁଣିଲା ପରେ ଅଭିଳାଷଙ୍କ ମନରୁ ଚିନ୍ତାର ବାଦଲ ଅପସରି ଯାଉଥିବାବେଳେ ଡାକ୍ତର ରବୀନ୍ଦ୍ରନ୍ କଣ୍ଠ ସଫା କରି କହିଲେ - ଯେହେତୁ ଦୁର୍ବଳତା ସହ ଅନୁଛ ଜ୍ୱର ରହୁଛି ତେଣୁ ଜେନେରାଲ୍ ଫିଜିସିଆନ୍ ଡାକ୍ତର ଦାଶ୍‌ଙ୍କୁ ତାଙ୍କ ଦୋଳ ମୁଣ୍ଡାଇସ୍ଥିତ 'ଜୀବନ୍ୟାସ' ନର୍ସିଂହୋମ୍‌ରେ ଥରେ ଦେଖାଇ ଦେବା ପାଇଁ ।

'ଜୀବନ୍ୟାସ' ନର୍ସିଂହୋମ୍‌କୁ ଯିବାବେଳେ ଅଭିଳାଷ ମନେ ମନେ ଭାବୁଥିଲେ କାଡିଓଲୋଜିଷ୍ଟ କାଡାଇଟିସ୍, ଟିବି ବିଶେଷଜ୍ଞ ଟ୍ୟୁବରକୁଲାର ଆର୍‌ଥ୍ରାଇଟିସ୍ ଓ ଗଣ୍ଠି ଡାକ୍ତର ବର୍ଷାଇଟିସ୍ କହିଲା ପରି ଏ ଜେନେରାଲ୍ ଫିଜିସିଆନ୍ କେଉଁ "ଟିସ୍" କହିବେ କେଜାଣି ?

'ଜୀବନ୍ୟାସ'ର ଡାକ୍ତର ଦାଶଙ୍କୁ ଦେଖାକରି ରୋଗର ବୃତ୍ତାନ୍ତ ଶୁଣାଇଲା ପରେ ଆର୍. କେ ଲକ୍ଷ୍ମଣଙ୍କ କମନମ୍ୟାନ୍‌ଙ୍କ ଭଳି ଦିଶୁଥିବା ଡାକ୍ତର ଦାଶ ଅନେକ ଅବାନ୍ତର ପ୍ରଶ୍ନ

ପଚି, ପତ୍ନୀଙ୍କୁ ପଚାରିଲା ପରେ ଆଶାଙ୍କୁ ବାହାରକୁ ଯିବାକୁ କହି ଅଭିଳାଷଙ୍କୁ ଏକୁଟିଆ ପାଇଲା ପରେ ଗମ୍ଭୀର ହୋଇ କହିଲେ - ରୋଗିଣୀର ଏଚ ଆଇ ଭି ଟେଷ୍ଟ କରିବାକୁ ପଡିବ ।

ଡାକ୍ତରଙ୍କ ମୁହଁରୁ ଏ କଥା ଶୁଣି ଅଭିଳାଷଙ୍କ ମୁହଁଟି ଶେତା ପଡ଼ି କଣ୍ଠ ଶୁଖିଯାଇଥିଲା । ତାଙ୍କର ମାନସିକ ଅବସ୍ଥା ଜାଣିପାରି ଡାକ୍ତର ଦାଶ ବୁଝାଇଲାପରି କହିଲେ - ଏଡ୍‌ସ ଅନେକ କାରଣରୁ ସଂକ୍ରମିତ ହେଇଥାଏ । ତା ଛଡା ଏଇ ରୋଗ ପାଇଁ ଏବେ ଔଷଧ ବାହାରିଲାଣି ଏବଂ ସେଇ ଔଷଧ ଖାଇ ଜଣେ ଆଠ, ଦଶ ବର୍ଷ ବଂଚିପାରିବ ।

ଡାକ୍ତରଙ୍କର ଅନୁମତି ନେଇ ସେଠାରେ ଥିବା ବେସିନ୍ ପାଖ ପାଣି ପାଇପ୍‌ରୁ ଦୁଇ ଢ଼ୋକ ପାଣି ପିଇ ରୁମାଲ୍‌ରେ ଝାଳ ପୋଛି ଡାକ୍ତରଙ୍କ ହାତରୁ ରକ୍ତ ପରୀକ୍ଷା କରିବାର କାଗଜଟି ଫାଇଲ୍ ଭିତରେ ରଖି ଅଭିଳାଷ ଟଳିଟଳି ଚ୍ୟାମ୍ବରରୁ ବାହାରିଥିଲେ ।

ଆଶା ତାଙ୍କୁ ବିଶ୍ୱାସରେ ବିଷ ଦେଇଛନ୍ତି ଜାଣି ମଧ୍ୟ ଅଭି ଚୁପ୍ ରହି ପରିଦିନ ଆଶାଙ୍କୁ ନେଇ ବଡ ଡାକ୍ତରଖାନା ଯାଇ ପରୀକ୍ଷା ପାଇଁ ରକ୍ତ ନେଇ ରିପୋର୍ଟ ଦୁଇଦିନ ପରେ ମିଳିବ ଜାଣି ଘରକୁ ଫେରିଲେ ।

ଅଭିଳାଷ ସେଇ ଦୁଇଦିନ ଧରି ଆଶାଙ୍କ ସହିତ କୌଣସି ବାକ୍ୟ ବିନିମୟ କରିନଥିଲେ । ଆଶା ପଚାରୁଥିବା ପ୍ରଶ୍ନର ଉତ୍ତର ସିଏ ହଁ, ନାଇଁରେ ସାରୁଥିଲେ ଏବଂ ଅନ୍ନ ଜଳ ତାଙ୍କୁ ବିଷ ପରି ଲାଗୁଥିଲା । ରିପୋର୍ଟ୍ ପଜେଟିଭ୍ ବାହାରିଲେ ସିଏ ଭବିଷ୍ୟତରେ କି ପନ୍ଥା ଅବଲମ୍ବନ କରିବେ ମନେ ମନେ ଭାବୁଥିଲେ ।

ଦୁଇଦିନ ପରେ ଥର ଥର ହାତରେ ରିପୋର୍ଟଟି ଆଣି ନେଗେଟିଭ୍ ଥିବାର ଦେଖି ଦୀର୍ଘନିଃଶ୍ୱାସ ପକାଇ ଆଶ୍ୱସ୍ତ ହୋଇ ରିପୋର୍ଟ୍‌ଟିକୁ ପକେଟ୍‌ରେ ରଖି ଖୁସି ମନରେ ଆଶାଙ୍କ ପାଇଁ କିଛି ଆପେଲ୍ କିଣି ଘରକୁ ଫେରିଲେ ଓ ନିଜ ହାତରେ ଆଶାଙ୍କୁ ଖୁଆଇଲେ ।

ରିପୋର୍ଟ୍ ଦେଖାଇବା ପାଇଁ ତାପର ଦିନ ଅଭିଳାଷ କଲେଜରୁ ଫେରିଲା ପରେ ଦୁହେଁ 'ଜୀବନ୍ୟାସ' ନର୍ସିଂହୋମ୍ ଯିବା ପାଇଁ ତିଆର ହେଉଥିବା ବେଳେ କଲିଂ ବେଲ୍‌ଟା ବାଜିଲା । ଅଭିଳାଷ କବାଟ ଖୋଲି ଦେଖିଲେ - ବାରିପଦାରେ ଡି. ଏସ୍. ପି. ଥିବା ଆଶାଙ୍କ ବଡ଼ଭାଇନାଙ୍କର ପିଲାଦିନର ସାଂଗ ତଥା ପିଉସୀ ଝିଅ ଭଉଣୀ ରଂଗନାନୀଙ୍କୁ ବିବାହ କରିଥିବା ସାଗର ଭାଇନା ସାମନାରେ ଠିଆ ହେଇଛନ୍ତି ।

ଅଭିଳାଷ ତାଙ୍କୁ ନମସ୍କାର କରି ଘରକୁ ପାଛୋଟି ଆଣିଲେ । ସାଗର ଭାଇନା ସୋଫାରେ ବସୁ ବସୁ କହିଲେ କଟକରେ ରହୁଥିବା ତାଙ୍କ ସାନ ଭାଇର ଝିଅ ବିଭାଘରରେ ଯୋଗଦେବା ପାଇଁ ସିଏ ଆଜି ବାରିପଦାରୁ ଆସି ପହଞ୍ଚିଛନ୍ତି । ରଂଗନାନୀ ବ୍ୟସ୍ତ ଥିବାରୁ ଏଠିକୁ ଆଣି ପାରିଲେ ନାହିଁ । ନିମନ୍ତ୍ରଣ ପତ୍ରଟି ଅଭିଳାଷଙ୍କ ହାତକୁ ବଢ଼ାଇ ଦେଉ ଦେଉ

ଆସନ୍ତା ଶୁକ୍ରବାର ଦିନ ଥିବା ବିଭାଘରରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ ।

ସାଗର ଭାଇନାଙ୍କ କଣ୍ଠସ୍ୱର ଶୁଣି ଆଶା ଛୋଟେଇ ଛୋଟେଇ ଆସି ଆଣ୍ଠୁ ଯୋଗୁ ମୁଣ୍ଡିଆ ମାରି ନପାରି ପାଦ ଛୁଇଁ ପ୍ରଣାମ କଲେ ।

ଭାଇନାଙ୍କ ପୋଲିସିଆ ଆଖିରୁ ସେ କଥା ବାଦ ଯାଇନଥିଲା । ତେଣୁ ସିଏ ଆଶା ଛୋଟେଇ ଚାଲିବାର କାରଣ ପଚାରିଥିଲେ ।

ଆଶାଠାରୁ ରୋଗର ସଂପୂର୍ଣ୍ଣ ବିବରଣୀ ଶୁଣି ଦେଲା ପରେ ଭାଇନା ହସିଦେଇ କହିଲେ - ତୋର ଆଉ ସେ 'ଜୀବ-ନାସ' ନର୍ସିଂହୋମ ଯିବା ଦରକାର ନାହିଁ । ମୁଁ ତୋ ରୋଗର ଡାଏଗ୍ନୋସିସ୍ କରିଦେଉଛି । ତୋର କୋଲାଜେନ୍ ଡିଜିଜ୍ ହୋଇଛି । ଷ୍ଟିରଏଡ୍ ଖାଇଲେ ଆରୋଗ୍ୟ ହେବୁ ।

ତାପରେ କହି ଚାଲିଲେ ଗତ ବର୍ଷ ରଂଗନାନୀଙ୍କର ଏଇସବୁ ଲକ୍ଷଣ ଥାଇ କେମିତି ଦେହ ଖରାପ ହେଇଥିଲା ଓ ଛ' ମାସ କାଳ ସିଏ ବୁଲିବୁଲି ଓଡ଼ିଶା ସାରା ଡାକ୍ତରଙ୍କୁ ଦେଖାଇଲେ ମଧ୍ୟ କେହି ବେମାରି ଧରିପାରିନଥିଲେ । ଭେଲୋର ଡାକ୍ତର କହିଲେ ଲକ୍ଷ୍ନୌରେ ଥିବା ଏଣ୍ଡୋକ୍ରାଇନୋଲୋଜିଷ୍ଟଙ୍କୁ ଦେଖାଇବା ପାଇଁ ଏବଂ ସେହିଠାରେ ହିଁ ରୋଗ ଚିହ୍ନଟ ହେଲା - "କୋଲାଜେନ୍ ଡିଜିଜ୍" । ଏବେ ରଂଗ ନାନୀ ଔଷଧ ଖାଇ ପ୍ରାୟ ଠିକ୍ ଅଛନ୍ତି ।

ତାପରେ ଆଶାଙ୍କୁ କହିଲେ - ଏବେ ତୁ ମୋ ସାଂଗରେ ବକ୍ରକବାଟି ରେ ଥିବା 'ସଂଯୋଗ' କୁ ଚାଲେ । ସିଏ ହଜାରେ ଟଙ୍କା ନେବ ଓ ତୋର ରକ୍ତ ସଂଗ୍ରହ କରି ବମ୍ବେରେ ଥିବା ରାନ୍‌ବାକ୍‌ସି ଲାବୋରେଟରିକୁ ପଠାଇ ସାତଦିନ ଭିତରେ ଏ. ଏନ୍. ଏ. ରିପୋର୍ଟ ଆଣି ଘରେ ପହଞ୍ଚାଇ ଦେବ ।

ତା ପରେ ମୁରୁକି ହସି ବାମ ହାତରେ ନିଜର ବାମ ପଟର ନିଶ ସାଉଁଳୁ ସାଉଁଳୁ ସାଗର ଭାଇନା କହିଲେ - ତୋର ଯଦି ଆଣ୍ଟିନ୍ୟୁକ୍ଲିଆର୍ ଆଣ୍ଟିବଡି ପଜେଟିଭ୍ ନ ଆସିବ ତାହାଲେ ମୋର ଏ ତୋରାଣୀଛଣା ନିଶରୁ ଫାଳେ କାଟିଦେବି ।

ଅଭିଳାଷ ଓ ଆଶା ଦୁହେଁ ଭାଇନାଙ୍କ କଥା ଶୁଣି ଆଁ କରି ତାଙ୍କ ଆଡ଼େ ଅନେଇ ରହିଲେ ।

# ଭିନ୍ନରୂପ

ତରତରରେ ଶାଢ଼ୀଟା ପିନ୍ଧିପକାଇ କୁଞ୍ଚଟା ସଜାଡୁ ସଜାଡୁ ରିନା ହାତଘଣ୍ଟା ଆଡ଼େ ଚାହିଁ ଦେଖିଲେ ଆଠଟା ବାଜିବାକୁ ଆଉ ପନ୍ଦର ମିନିଟ୍ ବାକି । ସକାଳେ ହାସପାତାଳରେ ପହଞ୍ଚିଲା ବେଳକୁ ଆଠଟାରୁ ଆଠଟା ପାଞ୍ଚ ହେଇଗଲେ ଡାକ୍ତମାନଙ୍କ ଉପସ୍ଥାନ ଖାତା ନିର୍ଦ୍ଦେଶକଙ୍କ ଟେବୁଲ ଉପରକୁ ନିଆହେଇଯାଏ ଏବଂ ଡେରିରେ ଆସିଥିବା ଡାକ୍ତରମାନେ ତାଙ୍କ ବଖରାକୁ ଯାଇ ଅପରାଧୀମାନଙ୍କ ଭଳି ନିର୍ଦ୍ଦେଶକଙ୍କ ସାମନାରେ ଦସ୍ତଖତ କରି ନିଜନିଜ ବିଭାଗକୁ ଯାଆନ୍ତି ।

ଯାହାହେଉ ବାଇଶ ବର୍ଷର ଚାକିରି ଭିତରେ ମେଡ଼ିକାଲ ଅଫିସର ରିନାଙ୍କୁ କେବେ ବି ସେ ଲଜ୍ଜାକର ପରିସ୍ଥିତିର ସାମ୍ନା କରିବାକୁ ପଡ଼ିନାହିଁ ।

ରିନା ଭ୍ୟାନିଟି ବ୍ୟାଗଟିକୁ ଧରି ଡାଇନିଂ ଟେବୁଲ ପାଖକୁ ଯାଇ ଦେଖିଲେ ସବୁଦିନ ପରି ଶାଶୁ ରାଜୀବଙ୍କୁ ବାଢ଼ିଦେବା ପାଇଁ ସେଠି ଜଗି ବସିଛନ୍ତି ।

ରିନା କାମ କରୁଥିବା ହସ୍ପିଟାଲ୍‌ରେ ରାଜୀବ ଭେଷଜ ବିଭାଗରେ ମୁଖ୍ୟ ଭାବେ କାମ କରନ୍ତି । ଦୁହେଁ ଏକା ସମୟରେ ଘରୁ ବାହାରିଲେ ମଧ୍ୟ ରିନା ପ୍ରାୟ ଘଣ୍ଟାଏ ପୂର୍ବରୁ ଘରକୁ ଫେରୁଥିବାରୁ ଘର କାମରେ ବ୍ୟାଘାତ ନ ଘଟିବା ପାଇଁ ଦୁହେଁ ନିଜ ନିଜର କାର ଚଳାଇ ଡାକ୍ତରଖାନା ଯାଆନ୍ତି ।

ରିନା ନିଜ ବ୍ୟାଗଟିକୁ ଡାଇନିଂ ଟେବୁଲର ଗୋଟେ କଡକୁ ରଖିଦେଇ ଚୌକିରେ ବସିପଡ଼ି ହଟକେଶ ଖୋଲି ନିଜ ପ୍ଲେଟରେ ସୁଜି ଉପମା ବାଢ଼ି ଖାଇବାକୁ ଆରମ୍ଭ କଲାବେଳେ ଶାଶୁ ରିନାଙ୍କୁ ଅନ୍ୟ ହଟ୍ କେଶରେ ଥିବା ଗରମ ଆଳୁ ତରକାରି ଉପମା ସାଙ୍ଗରେ ଗୋଳେଇ ଖାଇବା ପାଇଁ କହିଲେ ।

ସକାଳେ କେବଳ ମସଲା ଉପମାଟା ଶାଶୁଙ୍କ ମନକୁ ଯାଇ ନଥିବାରୁ ସିଏ ରୋଷେଇ କରୁଥିବା ସ୍ତ୍ରୀ ଲୋକ ମଇନାକୁ କହି ଆଳୁ, ଟମାଟୋ, କଂଚାଲଙ୍କାର ରାଗୁଆ ତରକାରିଟେ କରାଇଛନ୍ତି । ରୀନା ବାମ୍ଫ ଉଠା ପାଣିଆ ତରକାରିକୁ ଉପମା ଉପରେ ଢାଳିଦେଇ ଗୋଳେଇ ଖାଇଲା ବେଳେ ଶାଶୁଙ୍କୁ ମନେ ମନେ ପ୍ରଶଂସା ନ କରି ରହି ପାରିଲେନି - ସତରେ ଟୋପେ ତେଲରେ ପ୍ରେସର କୁକ୍‌ରରେ ତିଆରି ହୋଇଥିବା ତରକାରିଟା ଉପାମାର ସ୍ୱାଦକୁ କାହିଁ କେତେ ଗୁଣରେ ବଢ଼ାଇ ଦେଉଛି ।

ଗତ ସାତଦିନ ହେଲାଣି ଶାଶୁ ଏଠାକୁ ଆସିଛନ୍ତି । ଅଫିସ୍ କାମରେ ରାଜୀବ ଭୁବନେଶ୍ୱର ଯାଇଥିଲାବେଳେ ସେଠାରେ ରହୁଥିବା ଶାଶୁଙ୍କ ଦେହ ସାମାନ୍ୟ ଖରାପ ଥିବାରୁ ଶ୍ୱଶୁରଙ୍କ ଆଦେଶ ମାନି ସିଏ ତାଙ୍କୁ ଏଠାକୁ ଆଣିଆସିଛନ୍ତି । ଶାଶୁ ଆସିବା ପରିଦିନ ଠାରୁ ଘରେ ଆଉ ରିନାଙ୍କ କହିବା ଅନୁଯାୟୀ ରୋଷେଇ ପତ୍ର ହେଉନାହିଁ । ଶାଶୁ ମଧ୍ୟ ନିଜର ଦେହ କଥା ଭୁଲିଯାଇ ମଇନାକୁ ନିର୍ଦ୍ଦେଶ ଦେଇ ତାଙ୍କ ଇଛାନୁସାରେ ରୋଷେଇ କରାଉଛନ୍ତି ଏବଂ ଫଳସ୍ୱରୂପ ଘରେ ଏବେ ତରକାରି ପତ୍ରର ପ୍ରକାର ଓ ପରିମାଣ ବଢ଼ିଯାଇଛି ।

ପ୍ରତ୍ୟେକ ଦିନ ଖାଇସାରିଲାବେଳେ ଶାଶୁ ରାଜୀବଙ୍କ ଥାଳିରେ ବଳେଇ ବଳେଇ ଦ୍ୱିତୀୟ, ତୃତୀୟ ଥର ବ୍ୟଞ୍ଜନ ସବୁ ପରିଶିଲା ସମୟରେ ରିନାଙ୍କର ହଷ୍ଟେଲରେ ରହୁଥିବା ପୁଅ, ଝିଅଙ୍କ କଥା ମନେପଡ଼ି ଆଖି ଜକେଇ ଆସେ ଓ ଖାଦ୍ୟ ଗଳାରେ ଅଟକି ଯାଏ ।

ଶାଶୁଙ୍କର ଅଧିକ ରୋଷେଇ କରିବାର ଅଭ୍ୟାସ ପାଇଁ ରିନା, ରାଜୀବ ଓ ଶାଶୁ ଖାଇ ସାରିଲା ପରେ ପ୍ରାୟ ଜଣଙ୍କର ଖାଦ୍ୟ ବଳିଯାଏ । ବଳକା ଖାଦ୍ୟକୁ ଫ୍ରିଜ୍‌ରେ ନରଖି ଟିଫିନ୍‌ରେ ଭରି ରୋଷେଇ ଘରେ ରଖିଦେବା ପାଇଁ ରିନାଙ୍କୁ ନିର୍ଦ୍ଦେଶ ଦିଅନ୍ତି ଏବଂ ରାତିରେ ରୁଟି ତରକାରି ସାଙ୍ଗରେ ସେ ସବୁକୁ ବାଢ଼ି ଦିଅନ୍ତି ।

"ବୋଉ ଶୀଘ୍ର ବାଢ଼େ ତ ମୋର ଟାଇମ୍ ହେଇଗଲାଣି" ସୁଟ୍, ବୁଟ୍ ପିନ୍ଧିସାରି ବେସିନ୍ ପାଖରେ ହାତ ଧୋଇଲା ବେଳେ ରାଜୀବ ତାଙ୍କ ମା'ଙ୍କ ଉଦ୍ଦେଶ୍ୟରେ କହିଲେ ।

ରାଜୀବଙ୍କ ସ୍ୱର ଶୁଣି ଜଳଖିଆ ଖାଉଥିଲାବେଳେ ଅନ୍ୟମନସ୍କ ହେଇପଡ଼ିଥିବା ରିନା ଦେଖିଲେ ପୁଅ ପାଇଁ ଶାଶୁ ଥାଳିଆ ଭର୍ତ୍ତି ଉପମା ବାଢ଼ିଦେଇ ଖୁବ୍ ସତର୍କତା ସହିତ ତରକାରିର ପାଣିଆ ଅଂଶକୁ ବାଦ ଦେଇ ବହଳିଆ ତରକାରିର ତିନି ଡଙ୍କି ଉପମା ଉପରେ ଅଜାଡ଼ି ସେଥିରେ ଚାମଚଟେ ରଖି ସସ୍ନେହ ରାଜୀବ ଆଡ଼କୁ ବଢ଼ାଇଦେଲେ । ଜଳଖିଆ ପରିମାଣ ଦେଖି ରାଜୀବ ବ୍ୟସ୍ତ ହୋଇପଡ଼ି କହିଲେ- "ଓହୋ, ବୋଉ କେତେ ଦେଇଛୁ !"

ତା' ପରେ ରୀନାଙ୍କ ଖାଲି ହେଇ ଆସୁଥିବା ପ୍ଲେଟ୍‌ଟିକୁ ଦେଖି "ପ୍ଲିଜ୍ ରୀନା ତୁମେ ମତେ ଟିକେ ହେଲ୍‌ପ କର । ମୋ ପ୍ଲେଟ୍‌ରୁ କିଛିଟା ତୁମେ ନିଅ" କହିଲାବେଳକୁ ଶାଶୁ ଛାନିଆ ହେଇଗଲା ଭଳି ଚୌକିରୁ ଉଠିପଡ଼ି ପ୍ଲେଟ୍‌ଟିକୁ ରାଜୀବଙ୍କ ଆଡ଼କୁ ଆଉ ଟିକେ ଠେଲିଦେଇ କହିଲେ - "ତୁ ଖାଉନୁ, ତା' ପାଇଁ କ'ଣ ନାହିଁ ?"

ଶାଶୁଙ୍କ କଥା ଶୁଣି ରାଜୀବଙ୍କ ଆଡ଼େ ଚାହିଁ ଅର୍ଥପୂର୍ଣ୍ଣ ମୁରୁକି ହସଟେ ହସି ରୀନା ଖାଇବାରେ ମନଦେଲେ । ଶାଶୁଙ୍କର ଏଇ ବ୍ୟବହାର ପାଇଁ ରୀନା ସବୁବେଳେ ରାଜୀବଙ୍କୁ ଚିଡ଼ାନ୍ତି ।

ଉପମାର ପ୍ରଥମ ଚାମଚ ପାଟିରେ ପୂରାଇ ରାଜୀବ କହିଲେ- "ବୋଉ, ମୋର ଆଜି ଦିନବେଳେ ଘରେ ଖାଇବାର ନାହିଁ । ମୋର ଜଣେ ଅଫିସ କର୍ମଚାରୀଙ୍କର ପ୍ରମୋସନ ହେଇଛି ଯେ ସିଏ ଆଜି ମନ୍ଦିରରେ ଖାଇବାର ବନ୍ଦୋବସ୍ତ କରିଛନ୍ତି ।"

ରାଜୀବଙ୍କ ପାଟିରୁ କଥା ନ ସରୁଣୁ ସବୁଦିନ ପୁଅକୁ ଏଇ ସମୟରେ ରୋଷେଇର ମେନୁ ବିସ୍ତୃତ ଭାବେ ବର୍ଣ୍ଣନା କରୁଥିବା ଶାଶୁ ହଠାତ ନିରୁତ୍ସାହିତ ହେଇଯାଇ ରୀନାଙ୍କୁ କହିଲେ- "ଆଲୋ ରୀନା ଆଜି କ'ଣ ରୋଷେଇ ହେବ ମଇନାକୁ କହିଦେଇ ଯାଆ ।"

ଶାଶୁଙ୍କର ଏଇ କଥାରୁ ରୀନା ସ୍ପଷ୍ଟ ବାରିପାରିଲେ ଆଜି ତାଙ୍କ ପୁଅ ଖାଇବେ ନାହିଁ ବୋଲି ନିଜ ମୁଣ୍ଡରୁ ରୋଷେଇ ଦାୟିତ୍ୱଟା ଖସାଇଦେଲେ । ରୀନା ଜାଣନ୍ତି ଶାଶୁଙ୍କ ନଜରରେ ରାଜୀବଙ୍କ ସାଙ୍ଗରେ ସିଏ କେବେ ବି ସମାନ ହେଇପାରିବେନି ।

ରୀନାଙ୍କ ମାନସପଟରେ ଅଢ଼େଇ ବର୍ଷ ତଳର ଘଟଣାଟି ଭାସି ଉଠିଲା ।

ଖରାଦିନ ହୋଇଥାଏ । ଝିଅ ନିତୁ ଓ ପୁଅ ଦୁହେଁ ହଷ୍ଟେଲରୁ ଘରକୁ ଆସିଥାଆନ୍ତି ଏବଂ ନାତି, ନାତୁଣୀଙ୍କ ସାଙ୍ଗେ ସମୟ ବିତାଇବା ପାଇଁ ଶାଶୁ, ଶ୍ୱଶୁର ମଧ୍ୟ ଭୁବନେଶ୍ୱରରୁ ଆସି ପହଞ୍ଚିଥାଆନ୍ତି ।

ସେତେବେଳେ ରାଜୀବ ଏଇ ଭଳି ସାଣ୍ଟ୍ରୋ ନ ଚଳାଇ ଧଳା ମାରୁତି ଓ ରୀନା ଧଳା ଫିଏଟ୍ ଚଳାଉଥିଲେ । ରୀନା ସାଢ଼େ ବାରଟା ବେଳକୁ ଓ ରାଜୀବ ପ୍ରାୟ ଗୋଟେବେଳେ ଘରକୁ ଫେରୁଥିଲେ । ଲମ୍ବା ଗ୍ୟାରେଜ୍‌ରେ ଗାଡ଼ି ଦୁଇଟି ଆଗ ପଛ ହେଇ ରହୁଥିଲା ।

ପ୍ରତ୍ୟେକ ଦିନ ସାଢ଼େ ବାରଟାରେ ଘର ସାମନା ରାସ୍ତାରେ ରୀନା ଗାଡି ଅଟକାଇ ଡ୍ରାଇଭର ସିଟ୍‌ରୁ ଓହ୍ଲାଇ ଗେଟ୍ ଓ ଗ୍ୟାରେଜ ଖୋଲିସାରିଲା ପରେ ଗାଡ଼ିଟିକୁ ଗ୍ୟାରେଜରେ ରଖି ଗେଟ୍ ବନ୍ଦ କରି ଘରେ ପଶନ୍ତି । ଏଇ ଚଢ଼ା, ଓହ୍ଲା, ଖୋଲା, ବନ୍ଦରେ ତାଙ୍କର ପ୍ରାୟ ପନ୍ଦର ମିନିଟ୍ ସମୟ ବିତେ ।

ରୀନା ଶାଢ଼ୀ ବଦଳାଇ ହାତ ଗୋଡ଼ ଧୋଇସାରି ପିଲାଙ୍କ ବଖରାକୁ ଯାଇ ଦେଖନ୍ତି ଶାଶୁ, ଶ୍ୱଶୁର - ନାତି, ନାତୁଣୀଙ୍କ ସଙ୍ଗେ ଗପରେ ମାତିଅଛନ୍ତି । ଶାଶୁ ନିଜେ ନ ଖାଇ ବାକି ତିନିଜଣଙ୍କର ଖାଇବା ପର୍ବ ସାରିଦେଇଥାଆନ୍ତି ।

ରୀନାଙ୍କୁ ଦେଖି ଶ୍ୱଶୁର ଖବର କାଗଜଟି ଶାଶୁଙ୍କ ହାତକୁ ବଢ଼ାଇଦେଇ ଦ୍ୱିପହରର ଶୁଆ ଶୋଇବା ପାଇଁ ନିଜ ବଖରାକୁ ଚାଲିଯାଆନ୍ତି । ରୀନା ପୁଅ, ଝିଅଙ୍କ ପାଖରେ ବସିପଡ଼ି ତାଙ୍କ କଲେଜ କଥା ଶୁଣନ୍ତି । କିଛି ସମୟ ପରେ 'ରାଜୀବ ଆସିବାର ବେଳ ହେଲାଣି' କହି ଶାଶୁ ଖବର କାଗଜଟିକୁ ଧରି ବାହାର ବାରଣ୍ଡାରେ ଫ୍ୟାନ ଲଗାଇ ବସି ପୁଅକୁ ଅପେକ୍ଷା କରୁ କରୁ ଖବର କାଗଜ ଉପରେ ଆଖି ବୁଲାନ୍ତି । ରାଜୀବ ଆସିଲେ ଗ୍ୟାରେଜ ଓ ଗେଟ୍ ଖୋଲିସାରି ଆସି ରୀନାଙ୍କୁ କୁହନ୍ତି - ଆଲୋ ରୀନା ଯା ବଢ଼ାବଢ଼ି କର ରାଜୀବ ଆସିଲାଣି ।

ରୀନା ପୁଅ ଝିଅଙ୍କ ସାଙ୍ଗେ କଥାବାର୍ତ୍ତାର ପୂର୍ଣ୍ଣଚ୍ଛେଦ ପକାଇ ରୋଷେଇ ଘରକୁ ଯାଆନ୍ତି ।

ସେଦିନ ରୀନାଙ୍କର ଡାକ୍ତରଖାନାରୁ ଘରକୁ ଫେରିଲାବେଳକୁ ବେଶ ଡେରି ହେଇଯାଇଥିଲା ଓ ଦୁର୍ଯୋଗକୁ ରାଜୀବ ମଧ୍ୟ ସେତେବେଳେଯାଏ ଫେରି ନ ଥିଲେ ।

ରୀନା ଗୋଟେ ପନ୍ଦରବେଳେ ଗେଟ୍ ସାମନାରେ ବ୍ରେକ ଦେଇ ଗାଡ଼ିର ଡୋରଟା ଖୋଲିଲାବେଳକୁ ଦେଖିଲେ ଶାଶୁ ଆସି ଗେଟ୍ ଖୋଲି ସାରିଲେଣି ।

ରୀନାଙ୍କର ଘରକୁ ଆସିବାର ଡେରି ହେଇଯାଇଥିବାରୁ ଶାଶୁ ବୋଧହୁଏ ଦୟା କରି ଗେଟ୍ ଖୋଲିଦେଇଛନ୍ତି ଭାବି ରୀନାଙ୍କର ମନଟି ତାଙ୍କ ପ୍ରତି କୃତ୍ୟ କୃତ୍ୟ ହେଇ ଆସିଲାବେଳକୁ ଗାଡ଼ି ଭିତରେ ରୀନାଙ୍କୁ ଦେଖିଦେଇ ସିଏ ହଡ଼ବଡ଼େଇ ଯାଇ ହତାଶ ହେଇ କହିଲେ - ଆଲୋ ରୀନା ତୁ କି ? ମୁଁ ଭାବିଲି ରାଜୀବ ଆସିଲା ବୋଲି ।

ତାଙ୍କ କଥା ଶୁଣି ରୀନାଙ୍କ ମନରେ ଉଠୁଥିବା ଖୁସିର ଜୁଆରରେ ଭଟ୍ଟା ପଡ଼ିଥିଲା ।

ଖାଲି ପାଦରେ ଦୌଡ଼ି ଆସିଥିବା ଶାଶୁ ତତଲା ଚଟାଣ ଉପରେ ବସି ପଡ଼ି କହିଥିଲେ- "ଓହୋ ଏ ଚଟାଣଟା ନିଆଁ ପରି ତାତିଛି - ପାଦ ଫୋଟକା ହୋଇଗଲା ଭଳି ଲାଗୁଛି"

ରୀନାଙ୍କ ଭାବନାରେ ବାଧାଦେଇ ମଇନା ପଚାରିଲା - ମା' ଆଜି କ'ଣ ରୋଷେଇ ହେବ କହିଦେଇ ଯାଅ ।

ରୀନା ଡାଇନିଂ ଚେୟାରରୁ ଉଠିପଡି ଅଇଁଠା ପ୍ଲେଟ୍‌ଟିକୁ ଧରି ସିଙ୍କ୍ ଆଡ଼େ ଗଲାବେଳେ କହିଲେ- ତୁମେ ଖାଲି ବେସର ଟିକେ ବାଟି ରଖିଦେଇଥାଅ - ମୁଁ ଫେରିଲେ ନିଜେ ରୋଷେଇ କରିବି ।

ରୀନା ହାତ ଧୋଇଲାବେଳେ ଘଡ଼ିକୁ ଚାହିଁ ଦେଖିଲେ ଆଠଟା ବାଜିବାକୁ ଆଉ ମାତ୍ର ପାଞ୍ଚମିନିଟ୍ ବାକି । ଘରୁ ହସପିଟାଲରେ ପହଞ୍ଚିବାକୁ ତାଙ୍କୁ ଠିକ୍ ସେତିକି ସମୟ ହିଁ ଲାଗେ ।

ଟର୍କିସ୍ ଟାୱେଲରେ ହାତଟା ପୋଛିସାରି ଭ୍ୟାନିଟ୍ ବ୍ୟାଗ୍‌ଟା ନେଲାବେଳେକୁ ରୀନା ଦେଖିଲେ ସଦ୍ୟ ଖାଲି ହେଇଥିବା ରାଜୀବଙ୍କ ପ୍ଲେଟ୍‌ରେ ଶାଶୁ ଆଉ ଡଙ୍କେ ତରକାରି ଢାଳୁଛନ୍ତି ।

ରୀନା ରାଜୀବଙ୍କ ସଙ୍ଗେ ଦୃଷ୍ଟି ବିନିମୟ କରି ଈଷତ ହସି ଘରୁ ବାହାରି ଗାଡ଼ି ଷ୍ଟାର୍ଟ କଲେ ।

ସେଦିନ ରୀନା ଡାକ୍ତରଖାନାରୁ ଫେରି ମଇନାର ସହାୟତାରେ ଅରୁଆଭାତ, ମୁଗଡ଼ାଲି, ଆଳୁ ଚଟଣୀ, ସଜନା ଛୁଇଁ ରାଇ, ଫୁଲକୋବି ପକୁଡ଼ି ଛାଣି ଠିକ୍ ଗୋଟେବେଳେ ଶାଶୁଙ୍କୁ ଖାଇବା ପାଇଁ ଡାକିଲେ ।

ରାଜୀବଙ୍କ ପାଇଁ ଅପେକ୍ଷା କରିବାର ନଥିବାରୁ ଶାଶୁ ଶୀଘ୍ର ଖାଇବା ପାଇଁ ରାଜି ହେଇଗଲେ ।

ରୀନା ହିସାବରେ ରୋଷେଇ କରିଥିବାରୁ ସେଦିନ ଦୁହେଁ ଖାଇସାରିଲା ପରେ ସବୁ ପୋଛାପୋଛି ହୋଇ ସରିଯାଇଥିଲା ।

ଶାଶୁ ଖାଇସାରିଲା ପରେ ନିଜ ବଖରାକୁ ଯାଇ ସାଦା ପାନଟିଏ ଭାଙ୍ଗି କଳରେ ଜାକିଦେଇ କବାଟଟି ଆଉଜେଇ ବିଛଣାରେ ଲମ୍ୱା ହୋଇ ପଡ଼ିଯାଇ ଶୋଇବାର ପ୍ରୟାସ କରିଥିଲେ ।

ରୀନା ଅଇଁଠା ବାସନ ଓ ଡେକ୍‌ଚି, କଡ଼େଇ ମଜା ହେବାପାଇଁ କାଢ଼ି, ଡାଇନିଂ ଟେବୁଲ ପୋଛିସାରି ବାଟ କବାଟଟି ବନ୍ଦ କରିବାକୁ ଗଲାବେଳେ ଦେଖିଲେ ରାଜୀବଙ୍କ କାର ହତା ଭିତରେ ପଶୁଛି ।

ରୀନା କାନ୍ଥଘଡ଼ିକୁ ଚାହିଁ ଦେଖିଲେ ଦୁଇଟା ହୋଇଛି ।

ସାଧାରଣତଃ ରାଜୀବ ଦିନବେଳେ କୁଆଡ଼େ ଖାଇବା ପାଇଁ ଗଲେ ତିନିଟା ଆଗରୁ କେବେ ଫେରନ୍ତି ନାହିଁ ।

ଆଜି ଏତେ ଶୀଘ୍ର ଆସିଯିବାର ଦେଖି ସିଏ ନ ଖାଇ ଫେରିବାର ଅନୁମାନ କରି ରାଜୀବ ଗାଡ଼ିରୁ ଓହ୍ଲାଇଲା ମାତ୍ରେ ରୀନା ତାଙ୍କ ସାମନାରେ ଠିଆହୋଇ ପଡ଼ି ଉତ୍କଣ୍ଠାର ସହିତ ପ୍ରଶ୍ନ କଲେ - ତୁମେ ଖାଇକି ଆସିଛ କି ନାହିଁ ଆଗ କହିଲ -

- ନାଁ ହସ୍‌ପିଟାଲରେ ଡେରି ହୋଇଯିବାରୁ ମୁଁ ଖାଇବା ପାଇଁ ଯାଇପାରିଲିନି । - ଘରେ ପଶୁ ପଶୁ ଉତ୍ତର ଦେଲେ ରାଜୀବ । ରୀନା ମୁଣ୍ଡରେ ହାତ ଦେଇ କହିଲେ - ଇସ୍ ଘରେ ଆମର ଖିଆପିଆ ସରିଲାଣି । ପୁଣି ଆଜି ମୁଁ ରୋଷେଇ କରିଥିବାରୁ ତରକାରି ପତ୍ର କିଛି ଟିକେ ବି ବଳିନି - ନ ହେଲେ ରୁଟି ଦି'ଟା ସେକି ଦେଇଥିଲେ ତୁମେ ଖାଇଥାଆନ୍ତ ।

- ହଉ ବ୍ୟସ୍ତ ହୁଅନି । ଆଜି ଏଗାରଟାରେ ମୋ ରୁମ୍‌ରେ ଗୋଟେ ମିଟିଂ ଥିବାରୁ ମୁଁ ସିଙ୍ଗେଡ଼ା, ରସଗୋଲା ଖାଇଛି । ତେଣୁ ଏବେ ମୁଁ ନ ଖାଇଲେ ବି ଚଳିବ - ରାଜୀବ କହିଲେ ।

ରାଜୀବଙ୍କୁ ଅନୁସରଣ କରି ଶୟନକକ୍ଷକୁ ପଶିଯାଇ ରୀନା କହିଲେ - ଶୁଣ ତୁମେ ପୋଷାକ ବଦଳାଇବା ଭିତରେ ମୁଁ ମସୁର ଡାଲି ଓ ପରିବା ପକାଇ ଲୁଣି ଖେଚେଡ଼ି କରିଦେଲେ ତୁମେ ଦହି ପିଆଜ ଓ ପାମ୍ପଡ଼ ଲଗାଇ ଆଜି ଦିନଟା ଖାଇପାରିବ କି ?

କୋଟ୍ ଖୋଲି ହ୍ୟାଙ୍ଗରରେ ରଖୁ ରଖୁ ରାଜୀବ କହିଲେ - ସେ ସବୁ ଖାଇବା ପାଇଁ ପେଟରେ ଜାଗା ନାହିଁ । ଯଦି ପାରିବ ତା' ହେଲେ ପ୍ୟାକେଟ୍ ବାଲା ଟମାଟୋ ସୁପ୍ କପେ, ସାଙ୍ଗରେ କିଛି କଞ୍ଚା ମଟର ଫ୍ରାଏ କରିଦିଅ ।

ପଛକୁ ବୁଲିପଡ଼ି ରୀନା ରୋଷେଇ ଘରକୁ ଆସି ଗ୍ୟାସଚୁଲା ଲଗାଇ ଗୋଟେ ପଟେ ମଟର ଭାଜିବା ପାଇଁ କଡ଼େଇ ଓ ଅନ୍ୟ ପଟେ ସୁପ୍ କରିବା ପାଇଁ ପାଣି ବସାଇଲେ ।

ଗୋଡ଼ ହାତ ଧୋଇ ଡ୍ରେସ ବଦଳାଇ ରାଜୀବ ଡାଇନିଂ ଟେବୁଲ ପାଖକୁ

ଆସିଲାବେଳକୁ ରୀନା ଟମାଟୋ ସୁପ୍ ଓ ସବୁଜ ମଟର ଭଜା ଆଣି ସାମନାରେ ରଖିଲେ ।

ରାଜୀବ ଖାଇସାରି ଶୟନ କକ୍ଷକୁ ଗଲାପରେ ରୀନା ତୃପ୍ତ ମନରେ ଚମନ୍ ବାହାର ପକାଇ ପାନ ଖଣ୍ଡେ ଖାଇବା ପାଇଁ ଶାଶୁଙ୍କ ବଖରାରେ ପଶିଥିଲେ ।

ରୀନା ଅତି ସନ୍ତର୍ପଣରେ ଗୁଆ କାଟିଥିଲେ ବି ଶାଶୁଙ୍କର ଛାଇ ନିଦଟା ଭାଙ୍ଗିଯାଇଥିଲା ଏବଂ ସିଏ ନିଦୁଆ ସ୍ୱରରେ ପଚାରିଥିଲେ - ରାଜୀବ ଖାଇସାରି ଫେରିଲାଣି ?

ରୀନା କହିଥିଲେ - ହଁ ଆସିଲେଣି ଯେ କିନ୍ତୁ ନ ଖାଇକି ।

ରାଜୀବ ଖାଇନଥିବା କଥା ଶୁଣି ଶାଶୁ ହାଉଳି ଖାଇ ରେଜେଇଟାକୁ ଫୋପାଡ଼ି ଦେଲେ ଉଠିପଡ଼ି ଚିତ୍କାର କଲାପରି କହିଲେ - ଆଜି କେଡ଼େ କଥାଟେ ନ ହେଲା - ଘରର ମୁଣ୍ଡ ମୋ ପୁଅଟା ଉପାସ ରହିଲା ଅଥଚ ମାଇପି ଦି'ଟା ପେଟେ ପେଟେ ଖାଇଲୁ !

ଏତିକି କହିସାରି ଶାଶୁ ରୋଷେଇ ଘର ଆଡ଼କୁ ମୁହାଁଇଲା ବେଳେ ରୀନା କହିଲା - ବୋଉ ମୁଁ ତାଙ୍କୁ ଟମାଟୋ ସୁପ୍ ଓ ମଟର ଭଜା ଦେଇ ସାରିଲିଣି ।

- ଆରେ ସେତିକିରେ କ'ଣ ତା'ର ପେଟ ପୂରିବ ? ତୁ ମତେ କଥା କହୁଛୁ । କହି ସିଏ ଆଗକୁ ବଢ଼ିଲେ ଘୁସୁରୁଥିବା କାନି ଆଡ଼େ ନଜର ନ ଦେଇ ।

ରୀନା କ୍ଷିପ୍ରଗତିରେ ରାଜୀବଙ୍କ ପାଖକୁ ଯାଇ କହିଲେ - ହେଇଟି ବୋଉ ତୁମ ପାଇଁ ଭାତ, ଡାଲି, ତରକାରୀ ରାନ୍ଧିବା ପାଇଁ ଗଲେଣି ।

ରାଜୀବ ରୋଷେଇଶାଳାକୁ ଆସି ଶାଶୁଙ୍କ ପଛପଟେ ଠିଆହେଇ ହାତ ବଢ଼ାଇ ହୁତ୍‌ହୁତ୍ ଜଳୁଥିବା ଦୁଇଟିଯାକ ଗ୍ୟାସ ଚୁଲା ଲିଭାଇଦେଇ କହିଲେ - ମୁଁ ଖାଇସାରିଲିଣି ତୁ କ'ଣ ପାଇଁ ନିଦରୁ ଉଠିକି ଆସିଲୁ ? ଯା ବିଶ୍ରାମ ନେ ।

ଶାଶୁଙ୍କ ହାତ ଧରି ଟାଣି ଟାଣି ଶୋଇବା ଘରକୁ ଆଣିଲାବେଳେ ଛୋଟ ପିଲା ପରି ରାଜୀବ କହିଲେ - ତୁ ଆଜି ରୀନାକୁ କ'ଣ ପାଇଁ ରୋଷେଇ ଦାୟିତ୍ୱଟା ଦେଲୁ ? ତୁ ରାନ୍ଧିଥିଲେ ମୁଁ ଆରାମରେ ବଳିଲା ଖାଦ୍ୟ ସବୁ ଖାଇଦେଇଥାଆନ୍ତି ଓ ତୁମମାନଙ୍କୁ ଏତେ ହଇରାଣ ହେବାକୁ ପଡ଼ିନଥାଆନ୍ତା ।

ଖଟରେ ବସିପଡ଼ି ଶାଶୁ ବିକଳ ହେଇ ପୁଅ ମୁହଁକୁ ଚାହିଁ ରହିଲେ । ବୋଧହୁଏ ଆଜି ବୋହୂକୁ ଦେଇଥିବା ରୋଷେଇ ଦାୟିତ୍ୱ ପାଇଁ ଅନୁତାପ କରୁଥିଲେ ।

# ସମୟ

"ଡାକ୍ତର ମିଶ୍ର, ଆପଣ ସିନା କହୁଛନ୍ତି ଜୀବନ ମରଣ ସବୁ ଭଗବାନଙ୍କ ହାତରେ କିନ୍ତୁ ମୋ ପାଇଁ ଆପଣ ହିଁ ଭଗବାନ। ଆପଣ ଚାହିଁଲେ ମୋ ବାପାଙ୍କୁ ନିଶ୍ଚେ ବଂଚାଇ ପାରିବେ। ବାପାଙ୍କୁ କେତେ ବା ବୟସ ହେଇଛି? ଆଜିକାଲି ଅଶି ବର୍ଷ ତ କିଛି ନୁହେଁ। ଅବଶ୍ୟ ତା ସାଂଗରେ ମଧୁମେହ ଓ ଉଚ୍ଚ ରକ୍ତଚାପ ଅଛି। ହେଲେ ବି ଆପଣ ଇଚ୍ଛା କଲେ ତାଙ୍କୁ ଜୀବନ୍ୟାସ ଦେଇ ପାରିବେ। ଏବେ ବାପାଙ୍କର କିଛି ହେଇଗଲେ ମୁଁ ଭାସିଯିବି। କଲି ଛାଡ଼ି ପଅର ଦିନ ମୋ ପୁଅର ବିଭାଘର। ଭୋଜି, ଘରର ଆଲୋକ ସଜା, ବ୍ୟାଣ୍ଡ ପାର୍ଟି, ଗାଡ଼ିର ଫୁଲ ସଜା ଇତ୍ୟାଦି ପାଇଁ ଆଗ୍ରୀମ ଟଙ୍କା ଦିଆ ସରିଲାଣି। ଏଇ ସମୟରେ ବାପାଙ୍କର କିଛି ହେଇଗଲେ.... ଯେତେ ଟଙ୍କାର ଔଷଧ, ଇଂଜେକ୍ସନ୍ ଲାଗିବ ମୁଁ ସବୁ କିଣିବା ପାଇଁ ରାଜି। ଆପଣଙ୍କ ଗୋଡ଼ ହାତ ଧରୁଛି ଆପଣ କେମିତି ହେଲେ ମୋ ବାପାଙ୍କୁ ବଂଚାଇ ରଖନ୍ତୁ।"

ଦଶଦିନ ପରେ-

"ଡାକ୍ତର ମିଶ୍ର, ଆପଣ କହୁଛନ୍ତି ଆଜି ବାପାଙ୍କୁ ନେଇ ଯିବା ପାଇଁ। କିନ୍ତୁ ଏ ପକ୍ଷାଘାତ ରୋଗୀକୁ ନେଇ ମୁଁ କେଉଁଠି ରଖିବି? ଯେଉଁ ବଖରାରେ ସିଏ ନାତି ସାଂଗେ ରହୁଥିଲେ ଏବେ ସେଠାରେ ପୁଅ ବୋହୂ ରହୁଛନ୍ତି। ଏ ଶୀତ ଦିନଟାରେ ସିଏ କ'ଣ ବାରଣ୍ଡାରେ ରହିପାରିବେ? ତାଙ୍କୁ ତ ଅଶି ବର୍ଷ ହେଲାଣି। ତା ଉପରେ ମଧୁମେହ ଓ ଉଚ୍ଚ ରକ୍ତଚାପ ରୋଗ। ଏବେ ସିଏ ନିଜେ ଗୁଡାଏ କଷ୍ଟ ପାଇବେ ଓ ତାଙ୍କ କଷ୍ଟ ଦେଖିବା ଆମ ପାଇଁ ଆହୁରି କଷ୍ଟକର ହେବ। ଆପଣ ଚାହିଁଲେ ତାଙ୍କୁ ଏ କଷ୍ଟରୁ ମୁକ୍ତି ଦେଇ ପାରିବେ। ଆପଣ ଭଗବାନ ସଦୃଶ। ଜୀବନ ମରଣ ସବୁ ଆପଣଙ୍କ ହାତରେ। ମତେ ଆପଣ ଏ ବିପଦରୁ ଉଦ୍ଧାର କରନ୍ତୁ।"

# ମୁକ୍ତି

ଆଭା ଶେଯରେ କଡ଼େଇ ଶୋଇ କାନ୍ଥ ଘଡିକୁ ଚାହିଁ ଦେଖିଲା ତିନିଟା ବାଜିଛି। ଅରୁଣ ଅଧ୍ୟାପନା ସାରି ଘରକୁ ଫେରିବାକୁ ଆହୁରି ଘଣ୍ଟାଏ ବାକି ଅଛି।

ଅରୁଣ ଖାଇସାରି କଲେଜ ଚାଲିଗଲା ପରେ ଆଭା ମଧ୍ୟାହ୍ନ ଭୋଜନ ସାରି ସବୁଦିନ ପରି ଟିକେ ଗଡ଼ପଡ଼ ହେବାପାଇଁ ଖଟକୁ ଆସିଥିଲା। ଛାଇନିଦରେ ଆଖି ଲାଗିଗଲା ବେଳକୁ ପେଟ ବଥା ପାଇଁ ନିଦଟା ଭାଙ୍ଗିଯାଇଥିଲା। ବେଶି ଟିକେ ଖାଇଦେଇ ଥିବାରୁ ପେଟଟା ମୋଡ଼ି ହେଉଛି। ସେ ବି ଘରେ ଥିବା ପୋଦିନା ଅର୍କରୁ ଚାମୁଚେ ପାଣିରେ ମିଶାଇ ଆଖି ବନ୍ଦ କରି ପିଇଥିଲେ ବି କୌଣସି ଉପଶମ ହେଇନଥିଲା।

ଅରୁଣଙ୍କୁ ଫୋନ୍ କଲେ ବ୍ୟସ୍ତ ହୋଇଯିବେ ଭାବି ସିଏ ଖଟରେ ସେମିତି ପଡ଼ି ରହି ତାଙ୍କ ଫେରିବା ବାଟକୁ ଚାହିଁ ରହିଛି।

କାନ୍ଥ ଘଡି ପାଖରେ ଶାଶୁ ଟଙ୍ଗେଇ ଦେଇ ଯାଇଥିବା ଗୁରୁଣ୍ଡି ଗୋପାଳଙ୍କର ବନ୍ଧେଇ କରା ଫଟଟି ଉପରେ ଦୃଷ୍ଟି ପଡ଼ିବା କ୍ଷଣି ଆଭାର ଶାଶୁଙ୍କ କଥା ମନେ ପଡ଼ିଲା।

ଗତବର୍ଷ ଠିକ୍ ଆଜି ତାରିଖରେ ଶାଶୁ କଟୁ ମନ୍ତବ୍ୟ କରି ଆଭାର ହୃଦୟକୁ ଆଘାତ ଦେଇ ଆସିବା ଦିନ ହିଁ ଗାଁକୁ ଫେରିଯାଇଥିଲେ। ଆଭା ସେଇ ଦୁଃଖରେ କାତର ହୋଇ କାନ୍ଦି କାନ୍ଦି ମାସେ ଯାଏ ଶେଯରୁ ଉଠି ପାରିନଥିଲା।

ଗତବର୍ଷର ଘଟଣା ଚଳଚିତ୍ର ପରି ଆଭାର ମନ ଦର୍ପଣରେ ଭାସି ଉଠିଲା।

ଶାଶୁ ସେଦିନ ଖୁସିରେ ଆତ୍ମହରା ହୋଇ ପୁଅ, ବୋହୂଙ୍କୁ ପାଖେ ମହଜୁଥିଲେ। ଆଭା ଆସି ପ୍ରଣାମ କଲାବେଳେ ଶାଶୁ ତାକୁ ଟେକୁ ଉଠାଇ ସ୍ନେହରେ ଛାତିରେ ଚାପି ମଥାକୁ ଆଉଁସି ପକାଇ କେତେ ଆଶୀର୍ବାଦ କରିଥିଲେ ଏବଂ ନିଜର ଆନନ୍ଦାଶ୍ରୁକୁ କାନିରେ ବାରମ୍ବାର ପୋଛିଥିଲେ।

ପୁଅ ବିଭାଘରରର ନ'ବର୍ଷ ପରେ ଭାବୀ ବଂଶଧର ଆସିବାର ଶୁଭ ସୂଚନାରେ ସିଏ କୁରୁଳି ଉଠୁଥିଲେ। ଚାରି ମାସ ବିତିଯାଇଥିଲେ ବି ପୁଅ ତାଙ୍କୁ ଏ ଶୁଭଖବରଟି ନ ଜଣାଇଥିବାରୁ ଅଭିମାନ କରିଥିଲେ ଏବଂ ଯେତେବେଳେ ଜାଣିଥିଲେ ଏ ପର୍ଯ୍ୟନ୍ତ ଡାକ୍ତରୀ ପରୀକ୍ଷା ପାଇଁ ଆଭାଙ୍କୁ ଡାକ୍ତରଙ୍କ ପାଖକୁ ନିଆ ହୋଇନି ସେତେବେଳେ ସିଏ ବିବ୍ରତ ଓ ବିରକ୍ତ ହେଉଥିଲେ। ସେଇଦିନ ଗାଧେଇ ସାରିଲା ପରେ ନିଜ ଟ୍ରଙ୍କ ଖୋଲି ଗୁରୁଣ୍ଡି ଗୋପାଳଙ୍କର ବନ୍ଧେଇ କରା ଫଟଟି ଯତ୍ନ ସହକାରେ ବାହାର କରି ନିଜ ଓଦା କାନିରେ ପୋଛି ଦେଇ ପୁଅ, ବୋହୂଙ୍କ ଶୋଇବାଘର କାନ୍ଥର କଣ୍ଟାରେ ଝୁଲାଇ ଦେଇ ପାଖରେ ଠିଆ ହେଉଥିବା ଆଭା ଉଦ୍ଦେଶ୍ୟରେ କହିଥିଲେ - "ମୋର ଏମିତିଆ ନାତିଟିଏ ଦରକାର।" ଶାଶୁଙ୍କ କଥା ଶୁଣି ଆଭାର ମୁଖମଣ୍ଡଳ ପାଟଳବର୍ଣ୍ଣ ଧାରଣ କରିଥିଲା ଓ ସିଏ ଲଜ୍ଜାରେ ମୁହଁ ତଳକୁ କରିଦେଇଥିଲା।

ଶାଶୁ ରାତିସାରା ବସ୍‌ରେ ଅନିଦ୍ରା ହେଇ ଆସିଥିଲେ ବି ସେଦିନ ଆଭାକୁ କୌଣସି କାମ କରିବାକୁ ନ ଦେଇ ତାର ଅରୁଚୀ ପାଟିକୁ ଭଲ ଲାଗିଲା ଭଳି ବ୍ୟଞ୍ଜନ ସବୁ ରାନ୍ଧି ପାଖରେ ବସାଇ ବଳେଇ ବଳେଇ ଖୁଆଇ ଥିଲେ ଏବଂ ସେତିକି ବେଳେ କହିଥିଲେ - ଗାଁ ଲୋକଙ୍କର ଓ ନଣନ୍ଦ କନିଙ୍କ କଥା ଭୁଲ ପ୍ରମାଣିତ ହେଲା। ସିଏ ଏବେ ଆଉ ଗାଁକୁ ଯିବେ ନାହିଁ, ଗାଁ ଲୋକଙ୍କୁ କହିକି ଆସିଛନ୍ତି ନାତି କି ନାତୁଣୀ ହେଲା ପରେ ସିଏ ପୁଅ ବୋହୂଙ୍କ ସାଙ୍ଗରେ ତାକୁ ନେଇ ଗାଁକୁ ଯିବେ ଏବଂ ସେଠାରେ ସତ୍ୟନାରାୟଣ ପୂଜା କରି ସାରା ଗାଁ ବାଲାଙ୍କୁ ଭୋଜିରେ ଆପ୍ୟାୟିତ କରିବେ।

ସନ୍ଧ୍ୟାରେ ଅରୁଣ ଅଫିସ୍‌ରୁ ଫେରିଲା ପରେ ଶାଶୁ ଓ ଅରୁଣ ମିଶି ଆଭାଙ୍କୁ ଡାକ୍ତରୀ ପରୀକ୍ଷା ପାଇଁ ଡାକ୍ତରଖାନା ନେଇଥିଲେ।

ଡାକ୍ତରାଣୀ ଆଭାଙ୍କୁ ପରୀକ୍ଷା କରି ସାରି ଅରୁଣଙ୍କୁ ଭିତରକୁ ଡାକି ଗମ୍ଭୀର ସ୍ୱରରେ କହିଥିଲେ - ଆଭା ଅନ୍ତଃସତ୍ତ୍ୱା ନାହାନ୍ତି। ସିଏ ଏକ ମାନସିକ ରୋଗରେ ପୀଡିତା।

ତା ପରେ ବୁଝାଇ କହିଥିଲେ - ଯେଉଁ ନାରୀମାନେ ସନ୍ତାନ ଧାରଣ କରିବା ପାଇଁ ଖୁବ୍ ବ୍ୟଗ୍ର ଥାଆନ୍ତି ସେମାନେ ପ୍ରାୟତଃ ଏହି ରୋଗରେ ପୀଡିତ ହୁଅନ୍ତି। ସେମାନଙ୍କଠାରେ ଗର୍ଭ ସଂଚାରର ସମସ୍ତ ଲକ୍ଷଣ ଦେଖାଗଲେ ମଧ୍ୟ ଗର୍ଭଥଳିରେ ଭ୍ରୂଣ ନଥାଏ। ସେଥିପାଇଁ ଏହାକୁ "ସିଉଡୋ ପ୍ରେଗ୍‌ନାନ୍‌ସି" ବା "ମିଛ ଗର୍ଭଧାରଣ" କୁହାଯାଏ।

ଡାକ୍ତରାଣୀଙ୍କର କଥା ଶୁଣି ଆଭାଙ୍କର ମୁହଁ ରକ୍ତଶୂନ୍ୟ ହୋଇ ଶେଥା ପଡିଯାଇଥିଲା ଓ ମୁଣ୍ଡ ଘୂରାଇ ଦେଇଥିଲା। ଆଭା ଟଳି ପଡୁଥିବା ସମୟରେ ଅରୁଣ ତାକୁ ଦୁଇ ହାତରେ ଧରି ଧୀରେ ଚଲାଇ କୋଠରିରୁ ବାହାରି ବାରଣ୍ଡାକୁ ଆସିଥିଲେ। ଆଭାର ଏ ଅବସ୍ଥା ଦେଖି ବାରଣ୍ଡାରେ ଅପେକ୍ଷା କରିଥିବା ଶାଶୁ ଉଦ୍‌ବିଗ୍ନ ହୋଇ ଚୌକିରୁ ଉଠିପଡି କ୍ଷିପ୍ର

ଗତିରେ ଯାଇ ଆଭାକୁ ଛାତିରେ ଆଉଜାଇ ଦେଇ ପିଠିକୁ ଆଉଁସି ପୁଅକୁ - "ଏ ସମୟରେ ଏମିତି ହୁଏ" କହି ବୋହୂକୁ କାର୍ ପର୍ଯ୍ୟନ୍ତ ଆଣିବାରେ ସାହାଯ୍ୟ କରିଥିଲେ।

ଅରୁଣ ବାଟସାରା ନିରୁତ୍ତର ରହି ଘରେ ପହଞ୍ଚି ଆଭାକୁ ଖଟରେ ଶୁଆଇ ସାରିଲା ପରେ ମାଆର ହାତ ଧରି ନିଜ ପ୍ରକୋଷ୍ଠରୁ ବାହାରି ନିମ୍ନ ଗଳାରେ ଡାକ୍ତରାଣୀ କହିଥିବା କଥାସବୁ ମାଆକୁ ଖୋଲି କହିଥିଲେ।

ପୁଅଠାରୁ ଏ ସବୁ ଶୁଣିଲା ପରେ ନିଜର ମାନସିକ ଭାରସାମ୍ୟ ହରାଇ ମା' ମୁଣ୍ଡରେ ଦୁଇ ହାତ ଦେଇ ଲଥ୍‌କିନୀ ତଳେ ବସି ପଡ଼ିଥିଲେ ଏବଂ ପର ମୁହୂର୍ତ୍ତରେ କାଳିସୀ ଲାଗିଲା ପରି ତଳୁ ଉଠିପଡି ଟଳି ଟଳି, ବୋହୂ ପାଖକୁ ଯାଇ କାନ୍ଦି, କାନ୍ଦି ଚିତ୍କାର କରି କହିଥିଲେ - ତୁ ବାଂଝ - ତୁ ବାଂଝ - କହି ଓ ଗାଁ ବାଲା ଠିକ୍ କହୁଥିଲେ। ତୁ କେବେ ବି ମା' ହୋଇ ପାରିବୁନି। ତୋ ବାଂଝ ମୁହଁ ମୁଁ ଆଜିଠାରୁ ଆଉ ଦେଖିବିନି।

ଏତିକି କହି ବୁଲିପଡି ଆଖିର ଲୁହକୁ ପିନ୍ଧା ଲୁଗା କାନିରେ ପୋଛି ପୋଛି ସିଏ କୋଠରିରୁ ବାହାରି ପୁଅକୁ ତୁରନ୍ତ ତାଙ୍କୁ ଗାଁକୁ ଯାଉଥିବା ବସ୍‌ରେ ବସାଇଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ।

ଅରୁଣ କେତେ ଅନୁନୟ ହୋଇ ନ ଯିବା ପାଇଁ କହିଥିଲେ ବି ସେଇ ରାତିରେ ଶାଶୁ ଗାଁକୁ ଫେରି ଯାଇଥିଲେ।

ଯିବା ସମୟରେ ସିଏ ଆଭା ପାଖକୁ ଯାଇ ନଥିଲେ ଏବଂ ଆଭା ମଧ୍ୟ ଶାଶୁଙ୍କ ସାମନାକୁ ଆସିବା ପାଇଁ ସାହସ କରି ପାରିନଥିଲା।

ଆଭା ଶେଯରେ ପଡି ରହି ଦୁଃଖ, ଅପମାନ ଓ ଲଜ୍ଜାର ମିଶ୍ରଣରେ ଗୁମୁରି ଗୁମୁରି ଅଶ୍ରୁମୋଚନ କରିଥିଲା।

ବସ୍‌ରେ ମା'ଙ୍କୁ ବସାଇ ଦେଇ ଅରୁଣ ଘରକୁ ଫେରି ଆଭା ଶୋଇଥିବା ଖଟ ଦାଢ଼ରେ ବସିପଡି ଆଭାଙ୍କ ମଥା ଉପରେ ହାତ ଥାପିଥିଲେ। ଅରୁଣଙ୍କ ନୀରବ ଆଶ୍ୱାସନା ଓ ଆତ୍ମୀୟତାର ସ୍ପର୍ଶରେ ନିଃଶବ୍ଦରେ କାନ୍ଦୁଥିବା ଆଭା ହଠାତ୍ ଉଚ୍ଚ ସ୍ୱରରେ କାନ୍ଦି ଉଠିଥିଲା। ଶାଶୁଙ୍କ ଲେଖାଯୋଖା ନଣନ୍ଦ କନିନାନୀ ଆଭାକୁ କେତେଥର ପରୋକ୍ଷ ଓ ପ୍ରତ୍ୟକ୍ଷରେ ବାଂଝ ବୋଲି କହିଥିଲେ ବି ସ୍ନେହମୟୀ ଶାଶୁଙ୍କ ମୁହଁରୁ ଏ କଥା ଶୁଣିବ ବୋଲି କେବେ ସ୍ୱପ୍ନରେ ଭାବି ନଥିବା ଆଭା ଦୁଃଖରେ ଭାଙ୍ଗିପଡୁଥିଲା।

ଆଖିରୁ ଲୁହଟକ ନିଃଶେଷ କଲାପରେ ସ୍ଥିର ମନରେ ଆଭା ଘଟଣାଟିର ବିଶ୍ଳେଷଣ କରିଥିଲା ଏବଂ ଶାଶୁଙ୍କର ଅଶାଳୀନ, ରୁକ୍ଷ, ବ୍ୟବହାର ପାଇଁ ଆଭା ତାଙ୍କୁ ଦୋଷାରୋପ ନ କରି ନିଜ ଭାଗ୍ୟକୁ ନିନ୍ଦା କରିଥିଲା।

ମାତ୍ର କୋଡିଏ ବର୍ଷ ବୟସରେ ଶାଶୁ ନିଜ ସ୍ୱାମୀଙ୍କୁ ହରାଇଛନ୍ତି। ସେତେବେଳେ

କୋଳରେ ଦେଢ଼ବର୍ଷର ପୁଅ ଅରୁଣ। ସେଇ ଦୁଃଖଦ ଘଟଣାପରେ ଅଚଳାଚଳ ସଂପତ୍ତି ଥିବା ତାଙ୍କ ଭାଇନା ତାଙ୍କୁ ନିଜ ଘରକୁ ଫେରାଇ ନେବା ପାଇଁ ଇଚ୍ଛା ପ୍ରକଟ କରିଥିଲେ ବି ଅରୁଣଙ୍କ ଜେଜେବାପା, ଜେଜେମାଆ ନିଜ ନାତି ଓ ବୋହୂକୁ ପାଖରୁ ନଛାଡ଼ି ତାଙ୍କର ଏକମାତ୍ର ପୁଅର ସନ୍ତକକୁ ଆଖି ଆଗରେ ରଖି ପୁତ୍ରର ଅକାଳ ବିୟୋଗର ଶୋକକୁ କିଛି ପରିମାଣରେ ଲାଘବ କରିବାର ପ୍ରଚେଷ୍ଟା କରିବେ ବୋଲି କହିଥିଲେ।

ଅରୁଣ ସେମାନଙ୍କ ଆଖିର ତାରା ଥିଲେ। ଯେଉଁ ବର୍ଷ ଅରୁଣ ମାଟ୍ରିକ୍ ପାଶ କଲେ ସେଇବର୍ଷ ସେଇ ଦୁଇଜଣଙ୍କ ମୃତ୍ୟୁ ଘଟିଥିଲା।

ଅରୁଣଙ୍କ ଜେଜେବାପା ସେପାରିକୁ ଯିବାର ଠିକ୍ ପୂର୍ବଦିନ ନିଜ ବୋହୂକୁ ଡାକି କହିଥିଲେ - ମୁଁ ଅରୁଣ ବିନା ଆଉ ପାରିରେ ବେଶୀଦିନ ରହିପାରିବି ନାହିଁ। କୋଳରେ ଧରି ବଢ଼େଇଥିବା ଅରୁଣର ପୁଅ ହୋଇ ମୁଁ ତା କୋଳକୁ ଫେରି ଆସିବି। ତାର ପଢ଼ା ସରିବାକ୍ଷଣି ତା'ର ବିଭାଘର କରିଦେବ। ନହେଲେ ସେ ପୁରେ ମୁଁ ଛଟପଟ ହେବି!

ତାଙ୍କ ମୃତ୍ୟୁ ପରେ ଅରୁଣ ମାମୁଙ୍କ ତତ୍ତ୍ୱାବଧାନରେ ରହି ପାଠ ପଢ଼ା ସାରି ଚାକିରି କରିଥିଲେ।

ନିଜ ଶ୍ୱଶୁରଙ୍କ କଥା ସ୍ମରଣ କରି ତଥା ନିଜ ଜୀବନର ଶେଷ ପର୍ଯ୍ୟାୟ ନାତି ନାତୁଣୀଙ୍କ ଗହଣରେ ଅତିବାହିତ କରିବେ ଭାବି ଶାଶୁ ଅରୁଣଙ୍କ ବିଭାଘର କଥା ଉଠାଇଥିଲେ।

ବାହାହେବା ପାଇଁ ପ୍ରଥମେ ଅମଙ୍ଗ ହେଉଥିବା ଅରୁଣ ଆଭାର ଶିଶୁ ସଦୃଶ ସୁକୋମଳ ଢ଼ଳ ଢ଼ଳ ଚେହେରା ଦେଖିଲା ପରେ ନିଜର ସମ୍ମତି ପ୍ରଦାନ କରିଥିଲେ ଓ ପ୍ଲସ୍ ଟୁ ପଢୁଥିବା ମାତୃହୀନା ଆଭା ସହିତ ବେଶ୍ ଜାକଜମକରେ ବିଭାଘର କରାଇଥିଲେ ମାମୁ।

ବିଭାଘରର ପ୍ରଥମ ବର୍ଷଟି ଶାଶୁ ଆଭାକୁ ଗାଁରେ ନିଜ ପାଖରେ ରଖିଥିଲେ। ପରେ ନିଜ ଭୁଲ୍ ବୁଝିପାରି ଅରୁଣଙ୍କ ପାଖକୁ ପଠାଇ ଦେଇଥିଲେ।

ସହରରେ ସବୁବେଳେ ଆଭାର ଶାଶୁଙ୍କ କଥା ମନେ ପଡିବାରୁ ଅରୁଣ ଗାଁ ଘରେ ଫୋନ୍ ଲଗାଇ ଦେଇଥିଲେ। ପ୍ରତ୍ୟେକ ଦିନ ଫୋନ୍ ଜରିଆରେ ଶାଶୁ, ବୋହୂ ପରସ୍ପରର ଭଲମନ୍ଦ ଖବର ବୁଝୁଥିଲେ।

ଦୁଇ ବର୍ଷ ବିତିଯାଇଥିଲେ ବି ସବୁ ମାସରେ ଶୁଭ ଖବର ଶୁଣିବା ପାଇଁ ଉତ୍କଣ୍ଠିତ ହୋଇ ରହୁଥିବା ଶାଶୁଙ୍କୁ ନିରାଶ ହେବାକୁ ପଡୁଥିଲା।

ଶେଷରେ ଶାଶୁଙ୍କ ନିର୍ଦ୍ଦେଶାନୁସାରେ ଅରୁଣ ଓ ଆଭା ଲଜ୍ଜା, ସଂକୋଚ ତ୍ୟାଗ କରି ଦକ୍ଷ ଡାକ୍ତରମାନଙ୍କ ପାଖକୁ ଯାଇ ଅନେକ ଟଙ୍କା ଓ ସମୟ ବ୍ୟୟ କରି ନିଜ ନିଜର

ପରୀକ୍ଷା କରାଇଥିଲେ ଏବଂ ଗର୍ଭ ସଂଚାର ପାଇଁ ଅନେକ ଉପଚାରମାନ କରିଥିଲେ। ତା ସତ୍ତ୍ୱେ କିଛି କାର୍ଯ୍ୟକାରୀ ହେଉନଥିଲା।

ମଝିରେ ମଝିରେ ଶାଶୂ ଆସି ସଂଗରେ ଆଣିଥିବା ଅନେକ ଜଡିବୁଟି ଆଭାକୁ ଖୁଆଇ ପୂଜା, ଉପାସ ଓ ବ୍ରତ ଆଦି କରାଉଥିଲେ।

ଧୀରେ ଧୀରେ ଆଭା ଦୁଃଖରେ ଭାଙ୍ଗିପଡି ସବୁବେଳେ ଘରେ ନିଜକୁ ଆବଦ୍ଧ କରି ରଖୁଥିଲା।

ଏ ଭିତରେ ନ ବର୍ଷ ପାର ହୋଇଯାଇଥିଲା। ଶାଶୂ ମନେ ମନେ ଦୁଃଖିତ ଓ ଚିନ୍ତିତ ଥିଲେ ବି ଆଭା ମନରେ କଷ୍ଟହେଲା ଭଳିଆ କୌଣସି କଥା କହି ନଥିଲେ। କିନ୍ତୁ ସେଦିନ ଉତ୍ତେଜିତ ହୋଇ କଠୋର ଶବ୍ଦ କହି ଆଭାର ମନକୁ ରକ୍ତାକ୍ତ କରି ଦେଇଥିଲେ। ଗତବର୍ଷ ଶାଶୂ କ୍ରୋଧ କରି ଗାଁକୁ ଚାଲିଯିବାର ତିନିମାସ ପରେ ଆଭାର ପୁଣି ଗର୍ଭ ସଂଚାରର ଲକ୍ଷଣ ପ୍ରକାଶ ପାଇଥିଲା। ଆଭା ତାହାକୁ ଡାକ୍ତର କହିଥିବା 'ସିଉଡୋ ପ୍ରେଗ୍‌ନାନ୍‌ସି' ଭାବି ଅରୁଣଙ୍କୁ କିଛି କହିନଥିଲା।

ଦିନେ ସକାଳେ ଆଭାର ଅସମ୍ଭାଳ ବାନ୍ତି ହେବାରୁ ଅରୁଣ ଡାକ୍ତରଙ୍କ ପାଖକୁ ନେଇ ଯାଇଥିଲେ।

ସେଠାରେ ଡାକ୍ତର ପରୀକ୍ଷା କରି କହିଥିଲେ ଆଭା ମା' ହେବାକୁ ଯାଉଛି।

ସେ ଚମକପ୍ରଦ କଥା ଶୁଣି ଆଭା ଆଖିରୁ ଧାରା ଶ୍ରାବଣ ଛୁଟିଥିଲା।

ଘରକୁ ଆସିଲା ପରେ ଖଟରେ ଶୋଇ ରହି ଗତ ବର୍ଷ ଶାଶୂ କାନ୍ଥରେ ଟଙ୍ଗେଇ ଦେଇଯାଇଥିବା ବାଳ ଗୋପାଳଙ୍କୁ ଅପଲକ ନୟନରେ ଚାହିଁ ଅନେକ କାନ୍ଦିଥିଲା। ଅରୁଣ ମଧ୍ୟ ତାକୁ କାନ୍ଦରୁ ନିବୃତ୍ତ କରାଇବା ପାଇଁ କୌଣସି ବାକ୍ୟ ଉଚ୍ଚାରଣ କରିନଥିଲେ। ମନେ ମନେ ଭାବୁଥିଲେ ଦୁଃଖର ଲୋତକ ସେ ଚକ୍ଷୁଦ୍ୱୟଙ୍କୁ ଅନେକ ବର୍ଷ ପ୍ଲାବିତ କରିଛି। ଆଜି ପ୍ରଥମ ଥର ପାଇଁ ଝରୁଥିବା ଆନନ୍ଦାଶ୍ରୁ ଆଭା ମନରେ ଜମାଟ ବାନ୍ଧିଥିବା ସବୁ ଦୁଃଖକୁ ଧୋଇଦେଉ।

ଯେତେବେଳେ ଅରୁଣ ଏ ଶୁଭ ଖବରଟିକୁ ନିଜ ମା'ଙ୍କୁ ଜଣାଇବା ପାଇଁ ଫୋନ୍ ପାଖକୁ ଗଲେ ସେତେବେଳେ ଫଟ ଉପରୁ ନଜର ହଟାଇ ଆଭା ଅରୁଣଙ୍କ ହାତକୁ ଧରି ଦେଇ କହିଲା - ଏବେ ନୁହେଁ। ମୋ ମଥାରୁ ଦାଗ ଲିଭିଲା ପରେ।

ଭବିଷ୍ୟତ ଉପରେ ଭରସା କରିପାରୁନଥିବା ଆଭାର ଇଚ୍ଛାନୁସାରେ ନୂତନ ଆଗନ୍ତୁକ ଆସିବାର ଖବରଟିକୁ ଅରୁଣ ସମସ୍ତଙ୍କଠାରୁ ଗୁପ୍ତ ରଖିଥିଲେ।

ସକାଳୁ ଆଖି ଖୋଲୁ ଖୋଲୁ ଆଭା ମନରେ ଆସୁଥିଲା - ସିଏ ମା' ହେବାକୁ ଯାଉଛି।

ଜୀବନ ପ୍ରତି ବିମୁଖ ହୋଇଯାଇଥିବା ଆଭାର ଉଦାସିଆ ଚେହେରା ଓ ମନରେ ସତେ ଯେମିତି କିଏ ମନ୍ତ୍ରଜଳ ଛିଞ୍ଚି ଦେଇଥିଲା।

ଆଭାକୁ ଜୀବନଟା ଆକର୍ଷଣୀୟ ମନେହେଲା। ପୃଥିବୀର ସବୁ ମଣିଷ, ପଶୁ, ପକ୍ଷୀ, ଗଛ, ଲତା, ଆକାଶ ଜହ୍ନ, ତାରା ଖୁବ୍ ଆପଣାର ମନେ ହେଲେ। ଘରର ସବୁ ଜିନିଷ ସାଇତି ରଖିବାକୁ ମନ ହେଲା। ଆଭା ଆଖି ଖୋଲା ରଖି ସ୍ୱପ୍ନ ଦେଖିବା ଆରମ୍ଭ କରିଥିଲା। ସିଏ ଅନୁଭବ କରୁଥିଲା ସତେ ଯେମିତି ସିଏ ଏ ପୃଥିବୀର ସର୍ବପ୍ରଥମ ମା' ହେବାକୁ ଯାଉଛି।

ଅରୁଣ ଅଫିସ୍ ଚାଲିଗଲା ପରେ ସବୁଦିନ ପରି ଆଭା ଆଉ ନିଜକୁ ଏକୁଟିଆ ମଣୁନଥିଲା। ଏକାନ୍ତରେ ବସି ଗର୍ଭସ୍ଥ ସନ୍ତାନ ସହିତ ଦୁଃଖଭରା ଅତୀତ ଓ ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଚୁପ୍ ଚୁପ୍ କେତେ କଥା ହେଉଥିଲା।

ଗତକାଲି ସନ୍ଧ୍ୟାରେ ଆଭା ନିଜ ସ୍ଫୀତ ଉଦରରେ ହାଲ୍କା ଭାବେ ହାତ ରଖି ନିଜ ସନ୍ତାନ ଉଦ୍ଦେଶ୍ୟରେ କହିଥିଲା - ଧନରେ ପ୍ରତ୍ୟେକ ମା' ନିଜ ପିଲାଙ୍କୁ କୋଳରେ ଧରିବା ପାଇଁ ଦଶ ମାସ ଅପେକ୍ଷା କରନ୍ତି। ମୁଁ କିନ୍ତୁ ତତେ ଦଶବର୍ଷ ହେଲାଣି ଅପେକ୍ଷା କରିଛି। ତୁ କେବେ ଜନ୍ମ ହୋଇ ତୋ କୁନିକୁନି ହାତରେ ମୋ ମଥାରେ ଲାଗିଥିବା କଳଙ୍କକୁ ପୋଛି ଦେବୁ କହିଲୁ ?

ଗର୍ଭସ୍ଥ ସନ୍ତାନ ସତେ ଯେମିତି ମା'ର ଭାଷା ବୁଝିପାରିଥିଲା। ସେଥିପାଇଁ ଆଜି ସକାଳୁ ତାର ଗର୍ଭ ଯନ୍ତ୍ରଣା ଆରମ୍ଭ ହୋଇଯାଇଛି।

ଆଭା ପେଟକୁ ଜାବୁଡି ଧରି କାନ୍ଥ ଘଣ୍ଟାକୁ ଚାହିଁ ଦେଖିଲା ଚାରିଟା ବାଜିଲାଣି। ଅରୁଣ ଫେରିବାର ସମୟ ହୋଇଗଲାଣି।

ଠିକ୍ ସେତିକିବେଳେ କଲିଂବେଲ୍ ବାଜିଥିଲା ଓ ଆଭା ଖଟରୁ ଓହ୍ଲାଇ ଟଳିଟଳି ଯାଇ କବାଟ ଖୋଲିଥିଲା।

ଘର ଭିତରେ ପଶି ଆଭାର ଅବସ୍ଥା ଦେଖି ଅରୁଣ ବ୍ୟସ୍ତ ହୋଇପଡି ଖୁବ୍ ଶୀଘ୍ର ଗାଡିରେ ଡାକ୍ତରଖାନା ନେଇଥିଲେ।

ଡାକ୍ତରଖାନା କର୍ମଚାରୀ ଆଭାକୁ ହ୍ୱିଲ୍ ଚେୟାରରେ ଲେବର ରୁମ୍ ଭିତରକୁ ଗଡାଇ ନେଲାବେଳେ ଅରୁଣ ଆଭାର ହାତ ଧରି ନେଇ କହିଥିଲେ - ଏବେ ବୋଉକୁ ଖବର କରୁଛି। ପ୍ଲିଜ୍ ମନା କରନି।

ସକାଳ ଛ'ଟାରୁ ଅରୁଣ ଓ ତାଙ୍କ ବୋଉ ଉଦ୍‌ବିଗ୍ନ ଓ ଆଶଙ୍କାରେ ଅଧୈର୍ଯ୍ୟ ହୋଇ ଲେବର ରୁମ୍ ସାମନାରେ ବସି ରହିଥିବାବେଳେ ଭିତରୁ କୁଆଁ କୁଆଁ କାନ୍ଦ ଶୁଣି ଦୁହେଁ ଉଠି ପଡିଥିଲେ। ଅରୁଣ ବ୍ୟସ୍ତ ହୋଇ ପଦ ଚାରଣା କରିଥିଲେ ଓ ତାଙ୍କ ମା' ଭଗବାନଙ୍କ

ଉଦ୍ଦେଶ୍ୟରେ ହାତ ଯୋଡିଥିଲେ।

ଲେବରରୁମ୍‌ର କବାଟ ଖୋଲି ସିଷ୍ଟର ଆଭାର ଲୋକ କିଏ ପଚାରି ପ୍ରକାଶ କରିଥିଲେ - ତାଙ୍କର ପୁଅଟିଏ ହେଇଛି ଏବଂ ମା' ଓ ପୁଅ ଦୁହେଁ ସୁସ୍ଥ ଅଛନ୍ତି।

ଅରୁଣଙ୍କ ବୋଉ ଚୌକିରେ ବସିପଡି ଆଖିର ଲୁହକୁ ପିନ୍ଧା କାନିରେ ବାରମ୍ବାର ପୋଛିଥିଲେ।

ସାଢ଼େ ସାତଟା ବେଳେ ଆୟା ଟ୍ରଲିରେ ପାଦରୁ ବେକଯାଏ ଧଳା ଚାଦରରେ ଢ଼ଙ୍କା ହେଇଥିବା ଆଭାକୁ ଲେବର ରୁମ୍‌ରୁ ବାହାରକୁ ଆଣିଥିଲେ। ନବ ଜାତକଟିକୁ ସଫା ଧଳା କନାରେ ଗୁଡାଇ ଯତ୍ନ ସହକାରେ ଆଭାର ଦୁଇଗୋଡ ମଝିରେ ସୁରକ୍ଷିତ ଭାବରେ ଶୁଆଇ ଦେଇଥିଲେ।

ଅରୁଣ ମୁଗ୍ଧ ହେଇ ପୁଅ ମୁହଁକୁ ଚାହିଁରହିଲେ ଓ ତାଙ୍କ ଆଖି ବାମ୍ଫେଇ ଯାଇଥିଲା। ଆଭା ଆଡେ ଚାହିଁ ଦେଖିଲେ ଦୁଇ ଆଖି ମୁଦି ହୋଇ ରହିଛି। ରାତିସାରା ଗର୍ଭ ଯନ୍ତ୍ରଣା ସହି କ୍ଳାନ୍ତ ହୋଇପଡି ଥିଲେ ବି ସଦ୍ୟ ପ୍ରାପ୍ତ ହୋଇଥିବା ମାତୃତ୍ୱର ଗୌରବରେ ମୁହଁଟି ପରିତୃପ୍ତ ଦିଶୁଥିଲା।

ଶାଶୁ ଚୌକିରୁ ଉଠି ପଡି ପ୍ରଥମେ ନାତିକୁ ଆଖି ପୂରାଇ ଦେଖି ସାରି ଆଭା ଆଡେ ଚାହିଁଥିଲେ ଓ ନିଜକୁ ସମ୍ଭାଳି ନ ପାରି ଆଭା ମଥା ଉପରେ ହାତ ରଖି ଅଡୁଆ ଚୁଟିକୁ ସାଉଁଳି ଦେଇଥିଲେ।

ଶାଶୁଙ୍କ ସ୍ପର୍ଶ ପାଇ ନିଦୁଆ ଆଖି ଖୋଲି କ୍ଷୀଣ ଗଳାରେ ଆଭା କହିଥିଲା - ବୋଉ ମୁଁ ବାଂଝ ନୁହେଁ। କନିନାନୀଙ୍କୁ କହିଦିଅ। ଗାଁ ବାଲାଙ୍କୁ କହିଦିଅ - ସାରା ସଂସାରକୁ କହିଦିଅ - ମୁଁ ବାଂଝ ନୁହେଁ।

ଆଭା ଏତିକି କହୁ କହୁ ହାଲିଆ ହୋଇଯାଇ ଲୁହରେ ଟଳମଳ ହେଉଥିବା ଆଖି ଦ୍ୱୟ ମୁଦି ଦେଇଥିଲା।

ଦୁଇ ଆଖିରୁ ଲୁହ ନିଗିଡ଼ି କାନ ଆଡେ ବୋହିଯାଇଥିଲା।

# ଅଦ୍ୱିତୀୟା

ଦୁଇଦିନ ତଳେ ଶ୍ରୀମତୀ ରାନୁ ରଥ ଫୋନ କରି ରୂପାଙ୍କୁ କହିଥିଲେ ସିଏ ଆସନ୍ତା ଶନିବାର ଦିନ ଭୁବନେଶ୍ୱରରେ ଥିବା ତାଙ୍କ ସାନ ଭାଇ ପାଖକୁ ଯିବେ।

ତାଙ୍କର କହିବାର ଉଦ୍ଦେଶ୍ୟ ଥିଲା, ରୂପା କିଛି ଜିନିଷ ସେଠାରେ ରହୁଥିବା ନିଜ ନାନୀଙ୍କ ପାଖକୁ ପଠାଇଲେ ସିଏ ନେଇ ଦେଇଦେବେ। ଶ୍ରୀମତୀ ରଥ ଯେତେବେଳେ ଭାଇ ଘରକୁ ଯାଆନ୍ତି, ଅଧ୍ୟାପିକା ରୂପା ପ୍ରାୟ ତାଙ୍କ ହାତରେ ନାନୀ ଭଲପାଉଥିବା ଏଠାକାର ପ୍ରସିଦ୍ଧ ଆରିଷାପିଠା ପଠାନ୍ତି। ରୂପା ଶୁକ୍ରବାର ଦିନ ଚାରିଟା ବେଳେ ଆରିଷା ପ୍ୟାକେଟ୍‌ଟି ସଜାଡ଼ି ଅନତି ଦୂରରେ ଥିବା ରାନୁରଥଙ୍କ ଘରକୁ ବାହାରିଥିଲେ।

ରୂପା ଫାଟକ ଖୋଲି ହତା ଭିତରେ ପଶିବା ଦେଖି ଲନ୍‌ରେ ପାଣିଦେଉଥିବା ତାଙ୍କ ଆୟା ହସିଦେଇ କହିଥିଲା, "ମା ଏକୁଟିଆ ଭିତରେ ଅଛନ୍ତି। ଆପଣ ଯାଆନ୍ତୁ।" ରୂପା ତାଙ୍କ ଶୟନ କକ୍ଷର କବାଟରେ କରାଘାତ କରି ପଚାରିଥିଲେ, "ମୁଁ ଭିତରକୁ ଆସିପାରେ କି ?" ରୂପାଙ୍କ ସ୍ୱର ଶୁଣି ଶ୍ରୀମତୀ ରଥ ପାଟିକରି କହିଥିଲେ। "ଆସନ୍ତୁ - ଆସନ୍ତୁ - ମିସେସ୍ ମିଶ୍ର।" ଆଉଜା କବାଟ ଠେଲି ରୂପା ତାଙ୍କ ଶୟନକକ୍ଷରେ ପଶି ଦେଖିଥିଲେ, ଶ୍ରୀମତୀ ରଥଙ୍କ ମୁହଁ ଓ ବେକରେ ଶୁଖିଆସୁଥିବା ପାଉଁଶିଆ ରଙ୍ଗର ସୌନ୍ଦର୍ଯ୍ୟ ବର୍ଦ୍ଧକ ପ୍ରଲେପ।

ରାନୁ ରଥ ବସିଥିବା ଘୂରା ଚୌକିରୁ ଉଠିପଡ଼ି ରୂପାଙ୍କୁ ବସିବାକୁ କହି ହାତରେ ରୂପାଙ୍କୁ ବସିବାକୁ କହି ହାତରେ ଧରିଥିବା ମହିଳା ପତ୍ରିକାଟିକୁ ପାଖ ଶେଯଉପରେ ପକାଇଦେଇ ସଂଲଗ୍ନ ସ୍ନାନାଗାରକୁ ତରତର ହୋଇ ପଶିଥିଲେ। ରୂପା ଆରିଷା ପିଠାର ପ୍ୟାକେଟ୍‌ଟି ସେଠାରେ ଥିବା ପ୍ରସାଧନ ଟେବଲ ଉପରେ ରଖିଦେଇ ଘୂରାଚୌକିରେ ବସିପଡ଼ି ଶ୍ରୀମତୀ ରଥଙ୍କ ଯିବା ବାଟକୁ ଚାହିଁ ରହି ଭାବିଲେ, ଶ୍ରୀମତୀ ରଥଙ୍କର ବୟସ

ପଚାଶ ହୋଇଯାଇଥିଲେ ବି କେହି ଦେଖିଲେ ତାଙ୍କୁ ଚାଳିଶରୁ ଅଧିକ କହିବେ ନାହିଁ। ଯେଉଁଦିନ ପ୍ରଥମ କରି ସିଏ ରୂପାଙ୍କୁ ନିଜର ବୟସ କହିଥିଲେ, ସେଦିନ ରୂପା ତାଙ୍କୁ ନିଜର ସମବୟସ୍କା ଜାଣି ଅବାକ୍ ହୋଇ ଯାଇଥିଲେ।

ମାତ୍ର ଦୁଇବର୍ଷ ହେଲା ତାଙ୍କ ସହିତ ରୂପାଙ୍କର ଚିହ୍ନା ପରିଚୟ ହୋଇଥିଲେ ବି ଶ୍ରୀମତୀ ରଥ ଅତି ଅନ୍ତରଙ୍ଗ ବାନ୍ଧବୀ ପାଲଟି ଯାଇଛନ୍ତି। ରାନୁ ରଥ ଇଂରାଜୀରେ ଏମ୍.ଏ ପାଶ କରିଥିଲେ ବି ଚାକିରି ନକରି ଘରେ ରହିବାକୁ ପସନ୍ଦ କରିଥିଲେ ଓ ନିଜର ଚେହେରା ପାଇଁ ସବୁବେଳେ ସଚେତନ ରହୁଥିଲେ। ସେଥିପାଇଁ ସାଲାଡ୍ ଖାଇ, ଫଳରସ, ସୁପ୍ ପିଇ ଓ ପ୍ରତିଦିନ ବ୍ୟାୟାମ କରି ଏବେ ଯାଏ ନିଜ ଚେହେରାକୁ ବାଗେଇ ରଖିଛନ୍ତି। ଏ ବୟସରେ ବି ସିଏ ବେଶ୍ ସତେଜ ଦିଶନ୍ତି ଓ ନଖରୁ ନାସିକା ଯାଏ ଚକ୍ ଚକ୍।

ରୂପା ଯଦି କେବେ ଖବର ନ କରି ତାଙ୍କ ଘରେ ପହଞ୍ଚିଯାଆନ୍ତି ତାହେଲେ ଦେଖନ୍ତି ଶ୍ରୀମତୀ ରଥ କେବେ ଆଖିତଳେ ଘୋରା ଆଳମଣ୍ଡର ପ୍ରଲେପ ଦେଇ ସ୍ଥିର ସାଇକେଲ ଚାଳନା କରୁଛନ୍ତି ତ କେବେ ଉଷୁମ ଲୁଣ ପାଣିରେ ଦୁଇପାଦ ବୁଡ଼ାଇ ବସିଛନ୍ତି। ରୂପାଙ୍କୁ ଅଚାନକ ଦେଖିଲେ ବି ସଂକୁଚିତ ନହୋଇ ଆନ୍ତରିକତା ସହ ଏ ସବୁର ଉପକାରିତା ବିଷୟରେ ବୁଝାଇ ରୂପାଙ୍କୁ କରିବା ପାଇଁ ଉପଦେଶ ଦେଇଥାଆନ୍ତି। ରୂପା କିନ୍ତୁ ସନ୍ତାନ, ସ୍ୱାମୀ ଓ ଅଧ୍ୟାପନା କାର୍ଯ୍ୟରେ ବ୍ୟସ୍ତ ରହି ଏଥିପାଇଁ ସମୟ ପାଇପାରନ୍ତି ନାହିଁ।

ରାନୁ ରଥଙ୍କ କଥା ଅଲଗା। ତାଙ୍କ ପୁଅ, ଝିଅ ତାଙ୍କ ପାଖେ ରୁହନ୍ତିନି। ଝିଅ ବାହାହୋଇ ପ୍ୟାରିସ୍‌ରେ ଓ ପୁଅ କାଲିଫର୍ଣ୍ଣିଆରେ। ଉଚ୍ଚ ପଦବୀରେ ଅଧିଷ୍ଠିତ ମିଷ୍ଟର ରଥଙ୍କ ସାରାଦିନ କାର୍ଯ୍ୟାଳୟରେ କଟେ। ସେଥିପାଇଁ ଶ୍ରୀମତୀ ରଥଙ୍କୁ ନିଜ ରୂପଚର୍ଯ୍ୟା ପାଇଁ ପ୍ରଚୁର ସମୟ ମିଳିଥାଏ।

କୋମଳାଙ୍ଗୀ ଶ୍ରୀମତୀ ରଥ ଖରାଧାସରେ ଝାଉଁଳି ପଡ଼ିବେ ବୋଲି ଦିନବେଳେ ପ୍ରାୟ କୁଆଡ଼େ ଯାଆନ୍ତି ନାହିଁ। ଯଦି କେବେ ଦରକାର ପଡ଼େ ତାହେଲେ ମୁହଁ, ବେକ, ହାତ, ପାଦରେ ସନ୍‌ସ୍କ୍ରିନ ଲୋସନ ବୋଳି ଛତା ଧରି ବାହାରନ୍ତି।

ନିଜର ସୌନ୍ଦର୍ଯ୍ୟ ଲାଗି ଅତ୍ୟଧିକ ସଜାଗ ରହୁଥିବା ରାନୁ ରଥ ଗତ ମାସରେ ରୂପାଙ୍କୁ କହିଥିଲେ - ତାଙ୍କ ଝିଅ ବାହାଘର ପାଇଁ ସିଏ ତିରୁପତି ଯାଇ ସେଠାରେ ଚୁଟି ପକାଇବେ ବୋଲି ମାନସିକ କରିଥିଲେ ହେଁ ଭାରତରେ ଉପଯୁକ୍ତ ଓ୍ୱିଗ୍ ମିଳୁନଥିବାରୁ ତିନିବର୍ଷ ବିତିଯାଇଥିଲେ ବି ସିଏ ତିରୁପତି ଯାଇନାହାନ୍ତି। ଏଥର କୁଆଡ଼େ ପୁଅକୁ କହିଛନ୍ତି ଲେଡ଼ି ଡ଼ାଏନାଙ୍କ କେଶ ବିନ୍ୟାଶ ଥିବା ଓ୍ୱିଗ୍‌ଟିଏ ଆମେରିକାରୁ ଆଣିଲେ ସିଏ ଆସନ୍ତା ଖରାମାସରେ ତିରୁପତି ଯାଇ ଚୁଟି ପକାଇବେ। ସେଦିନ ରୂପା ତାଙ୍କ ସୌଖିନପଣିଆର କଥା ଶୁଣି ହସି ହସି ବେଦମ ହୋଇଥିଲେ।

ରୂପାଙ୍କ ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ ଶ୍ରୀମତୀ ରଥ ମୁହଁ ଧୋଇ ସ୍ନାନାଗାରରୁ ବାହାରି ଥିଲେ ।

ଲେଖୁଥିବା କାଗଜ ଉପରେ ଅକସ୍ମାତ ପଡ଼ିଯାଇଥିବା ସ୍ୟାହିକୁ ବ୍ଲଟିଂ ପେପର ଚାପି ଶୁଖେଇଲା ଭଳି ମିସେସ ରଥ ମୁହଁ ଓ ବେକରେ ଲାଗିଥିବା ଜଳବିନ୍ଦୁ ଉପରେ ଟର୍କିସ ଟାୱେଲର ଚାପ ଦେଉ ଦେଉ ପ୍ରସାଧାନ ଟେବୁଲ ସାମନାର ଷ୍ଟୁଲରେ ବସି ଆରିଷାପିଠାର ପ୍ୟାକେଟଟି ଦେଖିପାରି ରୂପାଙ୍କ ଉଦ୍ଦେଶ୍ୟରେ କହିଥିଲେ - "ମୁଁ ଭୁବନେଶ୍ୱରରେ ପହଞ୍ଚିଲା ମାତ୍ରେ ସାନଭାଇର ପିଅନ ହାତରେ ନାନୀଙ୍କ ଘରକୁ ପ୍ୟାକେଟ୍‌ଯି ପଠାଇଦେବି ।"

ଏତିକି କହି ଦର୍ପଣରେ ନିଜ ମୁହଁକୁ ନିରୀକ୍ଷଣ କରି ଟାୱେଲଟି କୋଳରେ ରଖି ଟେବୁଲ ଉପରେ ଥିବା ମଏଶ୍ଚରାଇଜରକୁ ଅକାର୍ପଣ୍ୟ ଭାବେ ମୁହଁ ଓ ବେକରେ ଖୁବ ଯତ୍ନ ସହକାରେ ଦୁଇ ହାତରେ ଲଗାଇଥିଲେ ।

ଶେଷରେ ଦୁଇହାତରେ ଲାଗିଥିବା ଅବଶିଷ୍ଟ ଲୋସନକୁ ନଷ୍ଟ ହେବାକୁ ନ ଦେଇ ଦୁଇ କହୁଣୀରେ ବୋଳି ସାରି ଟାୱେଲଟିକୁ ବାମ ହାତରେ ଧରି ଉଠିପଡ଼ି ଖଟ ପାଖକୁ ଆସି ତକିଆ ତଳେ ଥିବା ଲଫାପା ଭିତରୁ ତାଙ୍କ ଟ୍ରେନ ଟିକେଟଟି କାଢ଼ି ରୂପାଙ୍କ ହାତକୁ ବଢ଼ାଇ ଦେଇ ଅଭିଯୋଗ କଲାପରି କହିଥିଲେ - ଦେଖନ୍ତୁ, ଏ ଟିକେଟରେ ମୋର ବୟସ କେତେ ଲେଖା ହୋଇଛି । ରୂପା ଚଷମା ଭିତରୁ ଟିକେଟ ଆଡ଼େ ଚାହିଁ ଦେଖିଥିଲେ - ବୟସ ତେପନ ଲେଖାହୋଇଛି ।

ପଚାଶ ବଦଳରେ ତେପନ ଲେଖା ହୋଇଯାଇଥିବାରୁ ସିଏ କେଉଁ ଅସୁବିଧାର ସମ୍ମୁଖୀନ ହେବେ ବୁଝିନପାରି ରୂପା ତାଙ୍କ ଆଡ଼େ ଚାହିଁଥିଲେ ।

ରାନୁ କ୍ରୋଧ ପ୍ରକାଶ କରି କହିଥିଲେ - ଇଏ ମୋ ଟିକେଟ କାହାକୁ କରିବାକୁ ଦେଇଥିଲେ କେଜାଣି ତିନିବର୍ଷ ଅଧିକା କରି ଲେଖିଛି । ମୁଁ କ'ଣ ଏତେ ବୁଢ଼ୀ ଦିଶୁଛି ? ଆଶ୍ୱାସନା ଦେଇ ରୂପା କହିଥିଲେ - "ଯିଏ ଟିକେଟ କରିଛି ସିଏ ନିଶ୍ଚିତ ରୂପେ ଆପଣଙ୍କୁ ଦେଖିନାହିଁ ।" ରାନୁ ରଥଙ୍କୁ ଚିନ୍ତିତ ହେବାର ଦେଖି ରୂପା ପୁଣି କହିଥିଲେ - "ଆପଣ ଅଯଥାଟାରେ କାହିଁକି ମନଦୁଃଖ କରୁଛନ୍ତି । ଏଇ ଟିକେଟରେ ଲେଖାଥିବା ବୟସକୁ କିଏ କାହିଁ ଦେଖିବ ?"

ଶ୍ରୀମତୀ ରଥ ଖଟରେ ବସିପଡ଼ି ଦୁଃଖରେ ଜର୍ଜରିତ ହୋଇ କହିଥିଲେ, "ଟିକେଟ୍ ଚେକ୍ କଲାବେଳେ ଟିଟିଆଇ ଦେଖିବନି ?" ଇଷତ୍ ହସିରୂପା କହିଥିଲେ - "ଓହୋ ସିଏ ଆପଣଙ୍କ ବୟସ ନୁହେଁ ବର୍ଥ ନମ୍ବର ଦେଖିବା ।"

ରୂପାଙ୍କ କଥାରେ ସନ୍ତୁଷ୍ଟ ନହୋଇ ରାନୁ ରଥ କହିଥିଲେ - "ଯଦି ମୁଁ ଯାଉଥିବା ଟ୍ରେନ୍‌ଟି ଆକ୍‌ସିଡ଼େଣ୍ଟ ହୋଇଯିବ ଆଉ ମୁଁ ମରିଯିବି ତାହେଲେ କ'ଣ ହେବ ? କମ୍ପ୍ୟୁଟରରେ ତ ମୋର ବୟସ ତେପନ ବୋଲି ଲେଖା ହୋଇଯାଇଛି।"

ରୂପା ଆଶ୍ଚର୍ଯ୍ୟ ହୋଇ କହିଥିଲେ - "ଆପଣଙ୍କ ମନକୁ ଏ ଅମଙ୍ଗୁଳିଆ କଥାଗୁଡ଼ା ଆସୁଛି କ'ଣ ପାଇଁ ? ତା ଛଡ଼ା ଆକସିଡ଼େଣ୍ଟ ସାଙ୍ଗରେ ଆପଣ ଟିକେଟରେ ଲେଖାଥିବା ବୟସର କ'ଣ ସମ୍ପର୍କ ?"

ରୂପାଙ୍କୁ ବୁଝାଇ ରାନୁ ରଥ କହିଥିଲେ - "ରେଳ ଦୁର୍ଘଟଣାରେ ଯେଉଁ ଲୋକମାନେ ମୃତ୍ୟୁବରଣ କରିଥାଆନ୍ତି, ସେମାନଙ୍କ ବୟସ ମଧ ଲେଖାଥାଏ। ଯଦି ମୁଁ ରେଳ ଦୁର୍ଘଟଣାରେ ମରିଯିବି ତାହାହେଲେ ଖବର କାଗଜରେ ବାହାରିବ - ଶ୍ରୀମତୀ ରାନୁ ରଥ - ବୟସ ତେପନ ସେତେବେଳେ ଲୋକମାନେ ଭାବିବେନି ମୋର ବୟସ ତେପନ ଥିଲା ବୋଲି ?"

ରାନୁ ରଥଙ୍କ ବିଶ୍ଳେଷଣ ଶୁଣି ରୂପା ହସକୁ ଚାପି ନପାରି ହସି ହସି ତାଙ୍କୁ କହିଥିଲେ - "ଆପଣ ତ ମରିଯାଇଥିବେ। ଆପଣଙ୍କ ବୟସ ତିନିବର୍ଷ ଅଧିକ ଲେଖାହୋଇ ବାହାରି ପଡ଼ିଲେ ଆପଣଙ୍କୁ କ'ଣ ଫରକ ପଡ଼ିବ ଯେ ?"

ବିଷାଦଭରା କଣ୍ଠରେ ରାନୁରଥ କହିଥିଲେ - "ହେଲେ ବି ?"

# ଓଡ଼ିଆ ଘରର ବୋହୂ

ଭକ୍ତମାନଙ୍କ ଗହଣରେ ଘିଅ ଦୀପଟି ହାତରେ ଧରି ନେହା ଦୂରରୁ ରତ୍ନ ସିଂହାସନ ଉପରେ ବଳଭଦ୍ର ଓ ସୁଭଦ୍ରାଙ୍କ ସହ ବିରାଜିତ ଜଗନ୍ନାଥଙ୍କୁ ପ୍ରଥମ ଥର ଦେଖିଲା ଭଳି ଅପଲକ ନୟନରେ ଚାହିଁ ରହିଲା। ହଠାତ୍ ତାକୁ ବୋଧହେଲା ଏ ବିଶ୍ୱରେ ଜଗନ୍ନାଥ ବୋଧହୁଏ ଏକମାତ୍ର ଠାକୁର ଯିଏ କି ନିଜ ପତ୍ନୀଙ୍କୁ ଉପେକ୍ଷା କରି ନିଜ ଭାଇ ଭଉଣୀଙ୍କ ସହିତ ରହି ପୂଜା ପାଉଛନ୍ତି। ଅନ୍ୟ ମନ୍ଦିରରେ ଠାକୁରମାନେ ସ୍ୱ ସ୍ୱ ଠାକୁରାଣୀଙ୍କ ସହ ପୂଜା ପାଆନ୍ତି।

ନେହା ମନେ ମନେ ଭାବିଲା ଭକ୍ତଙ୍କ ସାମନାରେ ସମ୍ବେଦନଶୀଳ ଜଗନ୍ନାଥଙ୍କୁ ଯଦି ପତ୍ନୀ ଲକ୍ଷ୍ମୀଙ୍କୁ ପାର୍ଶ୍ୱରେ ରଖିବା ପାଇଁ ସଂକୋଚ ବା ଲଜ୍ଜା ଲାଗିଲା ତାହେଲେ ସିଏ ଦ୍ୱାରିକା ବା ତିରୁପତି ମନ୍ଦିରରେ ଥିବା ଦିଅଁଙ୍କ ପରି ଏକୁଟିଆ ରହିଥାଆନ୍ତେ। କିନ୍ତୁ ତା' ନ କରି -

ନେହା ମନଟା ବିକ୍ଷେଇ ଉଠିଲା ଓ ସିଏ ଜଗନ୍ନାଥଙ୍କଠାରୁ ମୁହଁ ଫେରାଇ ଆଗକୁ ଚାହିଁ ଦେଖିଲା ରତ୍ନବେଦୀ ନିକଟରେ ନନ୍ଦନ, ସ୍ପନ୍ଦନ, ସୁନନ୍ଦା ଓ ଶ୍ୱଶୁର ହାତକୁ ହାତ ଧରି ବିଭୋର ହେଇ ବଡ଼ ଠାକୁରଙ୍କ ଆଡ଼େ ଚାହିଁ ରହିଛନ୍ତି।

ଠେଲାପେଲାରେ ପଶି ନ ପାରି ସ୍ତ୍ରୀ ନେହା ଯେ କେତେ ପଛରେ ରହିଗଲାଣି ନନ୍ଦନ ଜାଣିପାରି ନାହାନ୍ତି। ଠିକ୍ ଜଗନ୍ନାଥଙ୍କ ଭଳି ମନୋଭାବ।

ଆଜି ପୁଣି କୁଆଡ଼େ ନେହାର ବିବାହ ବାର୍ଷିକୀ ! ନେହା ଅନ୍ୟମନସ୍କ ହେଇଗଲା।

ଯେଉଁଦିନ ତା' ବାହାଘର ନନ୍ଦନଙ୍କ ସାଙ୍ଗେ ପକ୍କା ହେଇଯାଇଥିଲା ସେଦିନ ସାନ ଭଉଣୀ ସ୍ନେହା ଥଟ୍ଟା କରି କହିଥିଲା - ନାନୀ ଜାଣିଛୁ ସେ ପିଲାର ମାରୁତି କାର୍ ଅଛି। ତେଣୁ ତୋ ସ୍ୱପ୍ନ ସାକାର ହେଲା ବୋଲି ଜାଣେ। ମାନେ ତୁ ବାହାଘର ବାସି ଦିନରୁ ତୋ ବର ସାଙ୍ଗେ ଏକୁଟିଆ ଲଙ୍ଗ୍ ଡ୍ରାଇଭ୍‌ରେ ଯାଇପାରିବୁ।

ତା' କଥା ଶୁଣି ଲୁହ ନିଗାଡୁଥିବା ନେହା କିଛି ସମୟପାଇଁ ସ୍ୱପ୍ନାବିଷ୍ଟ ହେଇଯାଇଥିଲା।

ଅଥଚ ବିଭାଘରର ବର୍ଷେ ପୂରିଯାଇଥିଲେ ବି ସିଏ ଏକୁଟିଆ କାର୍‌ରେ ନନ୍ଦନ ସାଙ୍ଗେ କୁଆଡ଼େ ଯାଇନାହିଁ।

ନନ୍ଦନଙ୍କ ସହିତ ଏକୁଟିଆ ବାହାରକୁ ଯିବାପାଇଁ ନେହା କେତେଥର ଯୋଜନା କରିଥିଲେ ବି କୌଣସି ଥର କୃତକାର୍ଯ୍ୟ ହେଇନଥିଲା। ସୁନନ୍ଦା ଓ ସ୍ୱନ୍ଦନ କେଜାଣି କେମିତି ଜାଣିପାରି ସାଥିରେ ଯିବାପାଇଁ ବାହାରି ପଡୁଥିଲେ। ଶାଶୁ ମଧ୍ୟ ସେମାନଙ୍କୁ ଆକଟ ନ କରି ଆହୁରି କୁହନ୍ତି ଭାଉଜ ଖୁସି ହେବ ଯାଅ।

ଶାଶୁଙ୍କ କଥାରେ ଶୁଖିଲା ହସଟେ ହସିଦେଇ ପାଖେ ବସିବ ବୋଲି ଆଗକୁ ବଢ଼ିଲା ବେଳକୁ ସୁନନ୍ଦା ଦୌଡ଼ିଯାଇ ଭାଇନାଙ୍କ ପାଖେ ବସିପଡ଼ି ସ୍ୱନ୍ଦନଙ୍କୁ କୁହନ୍ତି - ସ୍ୱନ୍ଦନ ତୁ ଭାଉଜଙ୍କ ସାଙ୍ଗରେ ପଛରେ ବସ।

ଶୁଖିଲା ହସ ହସୁଥିବା ମୁହଁଟି ନିଜ ଅଜାଣତରେ ଗମ୍ଭୀର ହେଇଯାଏ।

ଫେରିଲାବେଳେ ନନ୍ଦନଙ୍କଠାରୁ ଗାଡ଼ି ଚାବି ଆଗୁଆ ନେଇ ସ୍ୱନ୍ଦନ ଡ଼ୋର ଖୋଲି କୁହନ୍ତି - ନାନୀ ଆସିଲା ବେଳକୁ ତୁ ଭାଇନାଙ୍କ ପାଖରେ ବସିଥିଲୁ, ଏବେ ମୁଁ ବସିବି।

ଦିନେ ରାତିରେ ଖୁବ୍ ସାହାସ ସଂଚୟ କରି ନେହା ନନ୍ଦନଙ୍କୁ ପଚାରିଲା - ତୁମ ଇଞ୍ଜିନିୟରିଂ ପଢୁଥିବା ଭଉଣୀ ଓ ପ୍ଲସ୍ ଟୁ ପଢୁଥିବା ଭାଇ କ'ଣ ଏବେଯାଏ ଜାଣି ନାହାନ୍ତି ଯେ ଗାଡ଼ି ସ୍ୱାମୀ ଡ୍ରାଇଭ୍ କରୁଥିଲେ ପାଖ ସିଟ୍‌ରେ ସ୍ତ୍ରୀ ବସିବା କଥା ବୋଲି ? ମାନେ ମୁଁ ତୁମ ପାଖେ ବସିବା କଥା ବୋଲି ?

ହସିଦେଇ ନନ୍ଦନ କହିଥିଲେ - ଓହୋ ତୁମେ ବି ସେମାନଙ୍କ ସାଙ୍ଗେ ପିଲା ହେଇଯାଉଛ ନା କ'ଣ ?

ମୁହଁ ଫୁଲାଇ ନେହା କହିଥିଲା - ବାହା ହେଇଗଲି ବୋଲି ମୁଁ ବୁଢ଼ୀ ହେଇଗଲି ? ସୁନନ୍ଦା ପରା ମୋଠାରୁ ବର୍ଷେ ବଡ଼।

- ହଉ ହଉ ଏତେ ରାଗନି। ଅସଲ କଥା ହେଲା ମୁଁ ଗାଡ଼ି କିଣିବା ଦିନଠାରୁ ସେମାନେ ଆଗ ସିଟ୍‌ରେ ବସିବେ ବୋଲି ପ୍ରତିଯୋଗିତା କରିଥାଆନ୍ତି। ଏବେ ଦେଖୁଛି ତୁମେ ବି ସେ ପ୍ରତିଯୋଗିତାରେ ସାମିଲ ହେଲଣି।

ତା'ପରେ କ୍ଷଣେ ଚିନ୍ତାକରି କହିଥିଲେ - ଏବେ କୁଆଡ଼େ ଗଲାବେଳେ ଗ୍ୟାରେଜରୁ ଗାଡ଼ି କାଢ଼ିବା ଆଗରୁ ତୁମେ ଯାଇ ବସିପଡ଼। ବାସ୍ କାମ୍ ଖତମ୍।

ନନ୍ଦନ ମନେ ମନେ ମ୍ୟୁଜିକ ଚେୟାରରେ ଫାଷ୍ଟ ହେବାର ସୂତ୍ରଟା ସତେ ଯେମିତି ନେହାକୁ ବତାଇଦେଲେ।

ନେହା ରାଗିଯାଇ କାନ୍ଥଆଡ଼କୁ ମୁହଁ କରି ଶୋଇବାର ବାହାନା କରିଥିଲା।

ମାସେ ପୂର୍ବେ ଯେତେବେଳେ ଶାଶୁ, ଶ୍ୱଶୁର ନେହା ଆଦି ନନ୍ଦନଙ୍କ ସାଙ୍ଗେ ନୟାପଲ୍ଲୀରେ ରହୁଥିବା ସାନ ମାଉସୀ ଶାଶୁଙ୍କ ପୁଅ ବ୍ରତ ଘରକୁ ଯିବେ ବୋଲି ଠିକ୍ ହେଲା ସେତେବେଳେ ନେହା ଭାବିଥିଲା ଆଜି କାର୍‌ରେ ଗଲାବେଳେ ନନା, ବୋଉ ନିଷ୍ଚେ ତାକୁ ନନ୍ଦନଙ୍କ ପାଖରେ ବସିବାକୁ କହିବେ। ସେମାନେ ପାଖ ପଡ଼ୋଶୀର ଦେଖୁଛନ୍ତି କେମିତି ରାଓ ଦମ୍ପତି ଓ ଘୋଷ ଦମ୍ପତି ବୁଲିଗଲା ବେଳେ ପୁଅ ବୋହୂ ଆଗରେ ଓ ସେମାନେ ପଛ ସିଟ୍‌ରେ ବସନ୍ତି।

ସେଦିନ ସୁନନ୍ଦା ଓ ସ୍ପନ୍ଦନ ଦୁହେଁ କଲେଜ ଯାଇଥିବାରୁ ଘରେ ତାଲା ପକାଇ ଶାଶୁ ଶ୍ୱଶୁରଙ୍କ ସଙ୍ଗେ ନେହା ବାହାରିଲା ମାତ୍ରେ ରାସ୍ତା କଡ଼ରେ ଗାଡ଼ି ପାର୍କ କରି ବସିଥିବା ନନ୍ଦନ ଗାଡ଼ିରୁ ଓହ୍ଲାଇ ପଡ଼ି ଆଜ୍ଞାବହ ଅର୍ଦ୍ଦଳୀ ଭଳି ସାମ୍‌ନା ସିଟ୍‌ର ଡ଼ୋରକୁ ଖୋଲିଦେଇ ନନା ଏଇଠିକୁ ଆସ ବୋଲି କହିଥିଲେ।

କୌଣସି ବାକ୍ୟ ଉଚ୍ଚାରଣ ନ କରି ମଠା ଧୋତି ପଞ୍ଜାବୀ ପିନ୍ଧିଥିବା ଶ୍ୱଶୁର ଖସି ପଡୁଥିବା କାନ୍ଧ ଚାଦରଟିକୁ ସଜାଡ଼ି ଦେଇ ଆଗ ସିଟ୍‌ରେ ବସିଥିଲେ।

ହାତଟା ଭିତରକୁ ନିଅ କହି ନନ୍ଦନ ହୁସିଆରରେ ଡ଼ୋରଟିକୁ ବନ୍ଦ କରି ସେଇ ପାଖର ପଛ ଡ଼ୋରଟି ସରାଗରେ ଖୋଲି ଦେଇ - "ବୋଉ ତୁ ଏଇଠି ବସ" କହିଥିଲେ। ନେହା ଅବାକ୍ ହୋଇ ଚାହିଁଥିଲା ବେଳେ ନନ୍ଦନ କହିଥିଲେ - ଆରେ ଅନେଇଛ କ'ଣ, ଯାଅ ସେ ପଟେ ବସ।

ଗତକାଲି ରାତିରେ ଯେତେବେଳେ ନନ୍ଦନ କହିଥିଲେ - ନନା କହିଛନ୍ତି ଆମ ବିବାହର ବର୍ଷେ ପୂରୁଥିବାରୁ ପୁରୀ ଯିବା।

ଖୁସି ହେଇଯାଇ ନେହା ପଚାରିଥିଲା - ଆମେ ଦୁଇ ଜଣ?

- ଆମେ ମାନେ ଆମେ ସମସ୍ତେ - ନାନା, ବୋଉ, ସୁନନ୍ଦା, ସ୍ପନ୍ଦନ, ମୁଁ ଓ ତୁମେ।

- ଏତେ ଜଣ ତୁମ ଗାଡ଼ିରେ ଯାଇପାରିବେ ?

ସେଥିପାଇଁ ତ ମୁଁ ଗୋଟେ ବୋଲେରୋ ବରାଦ କରିବି ।

- ଖୁନ୍ଦାଖୁନ୍ଦି ହେଇ ବସିବାକୁ ପଡ଼ିବ ନା ?

- ଲାଗୁଛି ତୁମେ ବୋଲେରୋ ଗାଡ଼ି ଦେଖିନ । ସେଥିରେ ଆଠ ଜଣ ଆରାମରେ ବସିପାରିବେ ।

ନେହା ଚିନ୍ତା କରିଥିଲା - ସେଇ ଗାଡ଼ିରେ 'ଆମେ'ର ଲମ୍ବା ନାମ ତାଲିକାରେ ଶେଷରେ ନାଁ ଥିବା ନେହାକୁ କେଉଁଠି ବସିବାକୁ ପଡ଼ିବ କେଜାଣି ?

ସକାଳେ ବୋଲେରୋ ଗାଡ଼ିଟିଏ ଆସି ଘର ସାମନାରେ ଠିଆ ହେଲା । ନେହା ଉପର ମହଲା ଝରକା ପଟୁ ଦେଖିଲା ଉଚ୍ଚ ଗାଡ଼ିଟି କାର୍ ଓ ଜିପ୍‌ର ମିଶାମିଶି ମାନେ ଆଗଟା କାର୍ ଭଳି ଓ ପଛଟା ବନ୍ଦ ଜିପ୍ ଭଳି ।

ପ୍ରସ୍ତୁତ ହେଇ ତଳକୁ ଆସି ନେହା ଜାଣିବାକୁ ପାଇଥିଲା ଶାଶୁଙ୍କ ଅଣ୍ଟା ଅଚାନକ୍ ଧରି ଦେଇଥିବାରୁ ସିଏ ପୁରୀ ଯାଇପାରିବେ ନାହିଁ ।

ସମସ୍ତେ ମିଶି ଘରୁ ବାହାରିବା ବେଳେ ଶାଶୁ ନେହାକୁ କହିଥିଲେ ସାଙ୍ଗରେ ପାଣିବୋତଲ, ଗାମୁଛା ଓ ଘରେ ଥିବା ଆଳୁ ଚିପ୍‌ସର ଦୁଇଟା ପ୍ୟାକେଟ୍ ନେଇଯିବା ପାଇଁ ।

ଗୋଟେ ବ୍ୟାଗ୍‌ରେ ସେ ସବୁ ପୁରାଇ ନେହା ଗାଡ଼ି ପାଖକୁ ଆସି ଦେଖିଥିଲା ସମସ୍ତେ ଗାଡ଼ି ଭିତରେ ବସି ସାରିଛନ୍ତି ଏବଂ ଡ୍ରାଇଭର ପଛଡ଼ୋରଟି ଖୋଲି ନେହା ଉଦ୍ଦେଶ୍ୟରେ ଠିଆ ହେଇଛି ।

ନେହା ହାତରେ ଧରିଥିବା ବ୍ୟାଗ୍‌ଟିକୁ ଗୋଟେ ପଟର ସିଟ୍‌କୁ ଫିଙ୍ଗିଦେଇ ଗାଡ଼ିର ଲୁହା ପାହାଚରେ ପାଦ ଦେଇ ନଇଁପଡ଼ି ଗାଡ଼ି ଭିତରକୁ ପଶିଥିଲା ଓ ଡ୍ରାଇଭର ଡ଼ୋରଟିକୁ ଧଡ଼କିନା ପକାଇ ଲକ୍ କରି ନିଜ ସ୍ଥାନକୁ ଯାଇଥିଲା ।

ନେହା ପତଳା ଗଦିଥିବା ବେଞ୍ଚଭଳିଆ ସିଟ୍‌ରେ ବସିପଡ଼ି ମୁହଁ ଘୁରାଇ ଦେଖିଲା ଡ୍ରାଇଭର ପାଖ ଗୋଟିକିଆ ସିଟ୍‌ରେ ଶ୍ୱଶୁର ତା' ପଛ ସିଟ୍‌ରେ ନନ୍ଦନ, ସ୍ପନ୍ଦନ ଓ ମଝିରେ ସୁନନ୍ଦା ବସିଛନ୍ତି ।

ସମସ୍ତେ କଅଁଳ, ମୋଟା ଗଦିରେ ଆଉଜିକି ବସିଥିଲା ବେଳେ ଆଉଜିବା ପାଇଁ ବ୍ୟବସ୍ଥା ନ ଥିବା ସିଟରେ ନେହା ଠେଙ୍ଗା ଭଳିଆ ବସି ଆଖିର ଲୁହକୁ ଆଖିରେ ମାରି ଦେବା ପାଇଁ ଚେଷ୍ଟା କରିଥିଲା ।

ଡ୍ରାଇଭର ଚାବିମୋଡ଼ି ଗାଡ଼ି ଷ୍ଟାର୍ଟ କରିବାମାତ୍ରେ ଶ୍ୱଶୁର ଯାତ୍ରା ଶୁଭ ହେଉ କହି

ଦୁଇ ହାତଯୋଡ଼ି ମଥାରେ ଲଗାଇଥିଲେ ଓ ଚକ ଆଗକୁ ଗଡ଼ିଥିଲା ।

ପଛରୁ ଶାଶୁ ଉଚ୍ଚ ସ୍ୱରରେ କହିଥିଲେ - ସଂଧ୍ୟା ଆଗରୁ ଫେରିଆସିବ ରାତି କରିବନି ।

ଶହିଦନଗରର ଖାଲ ଢ଼ିପ ରାସ୍ତାରେ ବୋଲେରୋ ବେଗରେ ଚାଲିଲାବେଳେ ସମସ୍ତେ ଦୋହଲି ଦୋହଲି ଆଗକୁ ବଢ଼ିଲାବେଳେ ନେହା କେତେବେଳେ ବସିଥିବା ଲୁହା ବେଞ୍ଚରୁ ଦୁଇ ଚାରି ଇଞ୍ଚ ଉଠି କଚାଡ଼ି ହେଇ ପଡୁଥାଏ ତ କେତେବେଳେ ତା' ମୁଣ୍ଡଯାଇ ଗାଡ଼ି ଛାତରେ ବାଜୁଥାଏ ।

ଠିକ୍ ସେତିକିବେଳେ ନନ୍ଦନ ମୁହଁକୁ ସାମାନ୍ୟ ପଛକୁ ବୁଲେଇଦେଇ ପଚାରୁଥିଲେ - ତୁମେ ଠିକ୍‌ରେ ବସିଛ ତ ?

ନେହାକୁ ନିରୁତ୍ତର ରହିବା ଦେଖି ପୁଣି ପରାମର୍ଶ ଦେଲା ଭଳିଆ କହୁଥିଲେ - ମୁଁ ଆଉଜିଥିବା ସିଟ୍‌କୁ ବାଁ ହାତରେ ଭଲକି ଧର ଯେ ଏତେ ଅସୁବିଧା ହେବନି ।

ସାନ୍ତ୍ୱନା ଦେଇ ସନ୍ଦନ କହିଥିଲେ - ଭାଉଜ ବ୍ୟସ୍ତ ହୁଅନି ଆଉ ପାଞ୍ଚମିନିଟ୍‌ରେ ଭଲ ରାସ୍ତା ଆସିଯିବ । ଗାଡ଼ି ବିଜେବି କଲେଜ ପାର ହେଇ ପୁରୀ ରୋଡ ଧରୁ ଧରୁ ସନ୍ଦନ ହାତଟାକୁ ପଛକୁ ବଢ଼େଇ କହିଥିଲେ - ଭାଉଜ ଭୋକ ଲାଗିଲାଣି ବ୍ୟାଗ୍‌ରୁ ଅଙ୍କଲ୍ ଚିପ୍‌ସ ପ୍ୟାକେଟ୍‌ଟା ଦିଅତ ।

ପ୍ୟାକେଟ୍‌ଟା ହାତକୁ ବଢ଼ାଇଲା ମାତ୍ରେ ତାକୁ ଅଧୈର୍ଯ୍ୟ ହେଇ ଛିଡ଼ାଇ ଶ୍ୱଶୁରଙ୍କୁ ଥରେ ମାତ୍ର ଯାଚିଦେଇ ପଛରେ ନେହା ବସିଥିବା କଥା ପାଶୋରି ଦେଇ ତିନି ଭାଇ ଭଉଣୀ ମହାଆନନ୍ଦରେ ଖାଇବାରେ ଲାଗିଥିଲେ ।

ଶେଷ ମୁହୂର୍ତ୍ତରେ ପାଣି ବୋତଲ ଦରକାର ହେବାରୁ ବୋଧେ ନନ୍ଦନଙ୍କର ନେହା କଥା ମନେପଡିଥିଲା, ତେଣୁ ସିଏ ସୁନନ୍ଦାଙ୍କ ହାତରୁ ପ୍ୟାକେଟ୍‌ଟି ଟାଣି ଆଣି ଝାଡ଼ିଦେଇ ଭଙ୍ଗା ଆଳୁ ଚିପ୍‌ସ କେତେଟା ନେହା ଆଡ଼କୁ ବଢ଼ାଇ ନିଅ ଖାଅ କହିଥିଲେ ।

ମୁଁ ଏସବୁ ଖାଏନି କହି ଅଭିମାନୀ ନେହା ତାଙ୍କ ହାତଟିକୁ ଠେଲି ଦେଇଥିଲା ।

ହଉ କହି ନନ୍ଦନ ଗୋଟେ ଗୋଟେ ଟୁକୁଡ଼ା ସୁନନ୍ଦା ଓ ନନ୍ଦନଙ୍କୁ ଦେଇ ବାକିଟା ନିଜ ପାଟିରେ ପକେଇଥିଲେ ।

ସାକ୍ଷୀଗୋପାଳ ପାଖେ ଗାଡ଼ି ରଖି ଡ୍ରାଇଭର ଆଦି ସମସ୍ତେ ଓହ୍ଲାଇ ପଇଡ଼ ପିଇ ନାଲି ନଡ଼ିଆ ଖାଇଥିଲା ବେଳେ ନେହା ପଇଡ଼ ପିଇବାକୁ ମନା କରିଦେଇ ବାଟ ସାରା ବଁ ପଟକୁ ବେକ ମୋଡ଼ି ରାସ୍ତାକୁ ଚାହିଁବାର କାରଣରୁ କଟମଟ ହେଉଥିବା ବେକକୁ ହାତରେ ଦାବିଥିଲା ।

ପଇଡ଼ ପିଇ ସାରିଲା ପରେ ଗାଡ଼ିରେ ବସିବା ନେଇ ସୁନନ୍ଦା ଓ ସ୍ପନ୍ଦନଙ୍କ ଭିତରେ ଯୁକ୍ତିତର୍କ ଆରମ୍ଭ ହେଇଯାଇଥିଲା ।

ସୁନନ୍ଦା କହିଥିଲେ - ଏତେ ବାଟ ମୁଁ ମଝିରେ ବସିଲି ଏବେ ତୁ ମଝିରେ ବସ ।

ମୁଁ ସାଇଡ଼୍‌ରେ ବସିବି ।

ସ୍ପନ୍ଦନ କହିଥିଲେ - ମୁଁ ଖୁସିରେ ବସୁନି ତତେ ପ୍ରୋଟେକ୍‌ସନ ଦେବାପାଇଁ ସାଇଡ଼୍‌ରେ ବସୁଛି ।

- ଭାକ୍ ତୁ ମୋଠାରୁ ଛୋଟ ହେଇ ମତେ କି ସୁରକ୍ଷା ଦେବୁ ।

- ଭାଇମାନେ ଛୋଟ ହେଲେବି ଭଉଣୀକୁ ସୁରକ୍ଷା ଦିଅନ୍ତି ପଚାର ନନାଙ୍କୁ ।

ନିଜ ଆସନରେ ବସୁ ବସୁ ଶ୍ୱଶୁର କହିଥିଲେ - ସ୍ପନ୍ଦନ ଠିକ୍ କହିଛି । ତୁ ମଝିରେ ବସ ।

ନେହା ମନେ ମନେ ରାଗିଥିଲା ପଛରେ ବସିଥିବା ବୋହୂକୁ କୌଣସି ସୁରକ୍ଷା ଦରକାର ନାହିଁ ?

ନନାଙ୍କ କଥା ମାନି ସୁନନ୍ଦା ଦୁଇ ଭାଇଙ୍କ ମଝିରେ ସୁରକ୍ଷିତ ହେଇ ବସିପଡ଼ିଲେ ଠିକ୍ ଯେମିତି ରତ୍ନସିଂହାସନରେ ଜଗନ୍ନାଥ, ବଳଭଦ୍ରଙ୍କ ମଝିରେ ସୁଭଦ୍ରା ।

ନେହାର କାନ୍ଧକୁ ଜୋର୍‌ରେ ହଲାଇ ଦେଇ ନନ୍ଦନ କହିଲେ ଜଗନ୍ନାଥଙ୍କୁ କଡ଼ଣ ଏମିତି ଡ଼ବ ଡ଼ବ କରି ଅନେଇଛ ? ଏବେ ଯାଏ ଦୀପ ଜଳାଇନ ? ସବୁବେଳେ ଅନ୍ୟମନସ୍କ । ଜଲଦି କର ନନା ଭେରିକା ଲକ୍ଷ୍ମୀ ମନ୍ଦିର ଗଲେଣି ।

ତରତରରେ ଦୀପ ଜଳାଇ ମୁଣ୍ଡିଆ ମାରି ନନ୍ଦନଙ୍କ ସହିତ ଲକ୍ଷ୍ମୀ ମନ୍ଦିର ଗଲା ।

ବିଭାଘର ପୂର୍ବରୁ ଅନେକ ଥର ଲକ୍ଷ୍ମୀ ମନ୍ଦିରକୁ ଆସିଥିଲେ ବି ନେହାକୁ ଆଜି ଲକ୍ଷ୍ମୀଙ୍କ ମନ୍ଦିରଟା ଖୁବ୍ ଅନ୍ଧାରୁଆ ଓ ଛୋଟିଆ ମନେ ହେଲା ।

ନେହା ଭାବିଲା ଜଗତର ନାଥ ଜଗନ୍ନାଥ ନିଜେ ବିରାଟ ମୁଖ୍ୟ ମନ୍ଦିରରେ ଭାଇ ଭଉଣୀଙ୍କ ସାଙ୍ଗେ ରହି ଘରଣୀଙ୍କୁ ହତାଦର କରି ଏମିତି ପଛପଟେ ଗୋଟେ ନିହାତି ଛୋଟ ମନ୍ଦିରରେ ରଖିଛନ୍ତି ! ସେଥିପାଇଁ ବୋଧେ ବିନା କାରଣରେ ଭକ୍ତମାନଙ୍କଠାରୁ ଗାଳି ଶୁଣୁଥାଆନ୍ତି । ଗାଳି ଖାଇବାର ସବୁ ଯୋଗ୍ୟତା ପ୍ରଭୁ ଜଗନ୍ନାଥଙ୍କର ଅଛି !

ନେହା ମନକୁ ବୁଝେଇଲା - ମହାପ୍ରଭୁ ଜଗନ୍ନାଥଙ୍କ ପତ୍ନୀ ଯଦି ପଛର ଏ ମନ୍ଦିରରେ ରହିପାରୁଛନ୍ତି ତାହେଲେ ନେହାକୁ ସବୁବେଳେ କାର୍‌ରେ ପଛସିଟ୍ ମିଳୁଛି ବୋଲି କାହିଁକି ଅବହେଳିତ ହେଉଛି ବୋଲି ମନ ଦୁଃଖ କରିବ ? ଭାରାକ୍ରାନ୍ତ ମନରୁ ସବୁ ଆପତ୍ତି ଅଭିଯୋଗକୁ ଫିଙ୍ଗିଦେଇ ନେହା ମନକୁ ହାଲ୍‌କା କଲା ଓ ଲକ୍ଷ୍ମୀଙ୍କ ମୁଣ୍ଡିଆ ମାରି ଶଙ୍ଖା,

ସିନ୍ଦୂର କିଣି ମନ୍ଦିର ବାହାରକୁ ଆସି ପାହାଚରେ ବସି ତାକୁ ଅପେକ୍ଷା କରିଥିବା ନନ୍ଦନଙ୍କ ପାଖେ ବସିପଡ଼ିଲା ।

ଠିଆ ହେଇପଡ଼ି ନନ୍ଦନ କହିଲେ ଆଉ ବସିଲ କାହିଁକି ଉଠ - ସେମାନେ କେତେବେଳୁ ଆନନ୍ଦ ବଜାର ଗଲେଣି ।

ନନ୍ଦନଙ୍କୁ ଏକୁଟିଆ ପାଇଁ ଆନନ୍ଦ ବଜାର ଆଡ଼େ ଯାଉ ଯାଉ ମନରେ ଉଠୁଥିବା ପ୍ରଶ୍ନକୁ ଚାପି ନ ପାରି ନେହା ପ୍ରଶ୍ନ କଲା - ରତ୍ନ ସିଂହାସନରେ ପ୍ରଭୁ ଜଗନ୍ନାଥ ଟିକେ ପାଖେଇ ହେଇପଡ଼ି ଲକ୍ଷ୍ମୀଙ୍କୁ ବାମ ପାର୍ଶ୍ୱରେ ଜାଗା ଦେଇଥିଲେ କ'ଣ ଅସୁବିଧା ହେଇଥାଆନ୍ତା ?

ମୁହଁରେ ବିରକ୍ତିଭାବ ପ୍ରକାଶ କରି ନନ୍ଦନ କହିଲେ - ସାଥିରେ ବଡ଼ଭାଇ ଥାଉ ଥାଉ ପତ୍ନୀଙ୍କୁ ସେଠିକୁ କେମିତି ଆସିବାକୁ ଦେବେ ? ଓଡ଼ିଆ ହେଇ ଦେଢ଼ଶୁର ସାମନାକୁ ଭାଇବୋହୂ ଆସେନି ବୋଲି ଜାଣିନ ?

ସବୁ ବୁଝିଗଲା ଭଳି ନେହା କହିଲା - ଓହୋ, ଲକ୍ଷ୍ମୀ ତାହେଲେ ଖାଣ୍ଟି ଓଡ଼ିଆ ଘରର ବୋହୂ !

# ସମଦଶାପନ୍ନ

ଡାକ୍ତର ରିଚାମିଶ୍ର ଗାଡି ଡ୍ରାଇଭ କରି ହସ୍‌ପିଟାଲ ଗଲାବେଳେ ଭାବିଲେ ଆଜି ପାଞ୍ଚମିନିଟ୍ ବିଳମ୍ୱ ହେବାର କାରଣ ତାଙ୍କ ଆଉଟ୍‌ହାଉସରେ ଘରକାମ କରିବାକୁ ରହିଥିବା ସାବିତ୍ରୀ ପାଇଁ।

କାଲି ରାତିରେ ସାବିତ୍ରୀ ଓ ତା ବର ଶ୍ୟାମ ସେମାନଙ୍କ ଘରେ ଖୁବ ପାଟିତୁଣ୍ଡ କଲାପରେ ରିକ୍‌ସା ଚାଳକ ଶ୍ୟାମ ନିଜ ରିକ୍ସା ଧରି ଘରୁ ଚାଲିଯାଇଥିଲା। ସାବିତ୍ରୀ ବାହୁନି, ବାହୁନି ରିଚାଙ୍କ ପାଖକୁ ଆସି କହିଲା, ଶ୍ୟାମ ସହର ତଳ ବସ୍ତିରେ ଗୋଟେ ଯୁଆନ ଝିଅକୁ କେବେଠାରୁ ରଖିଛି। ତା'ରି ଡେଲିଭରି ପାଇଁ ଟଙ୍କା ଦରକାର ପଡିବାରୁ ସିଏ ବନ୍ଧା ପକାଇବା ପାଇଁ ସାବିତ୍ରୀର ସୁନା କାନଫୁଲ ମାଗିଲା। ବିଭାଘର ବେଳେ ମା ଦେଇଥିବା କାନଫୁଲ ସାବିତ୍ରୀ ନ ଦେବାରୁ ତାକୁ ମାଡମାରି କାନଫୁଲ ଛଡାଇବାକୁ ଚେଷ୍ଟାକରି ଅସଫଳ ହେଇ ଘରକୁ ଆଉ ଫେରିବନି କହି ଚାଲିଗଲା।

ରିଚା କ୍ରୋଧିତ ହେଇ କହିଥିଲେ - ତୁ ଏବେ ଚାଲ ମୋ ସାଙ୍ଗରେ ପୋଲିସ ଷ୍ଟେସନ। ଏଫ୍.ଆଇ.ଆର ଦେବା। ପୋଲିସ ତାକୁ ଧରି ନେଇ ଥାନାରେ ପିଟିଲେ ଠିକ୍ ସାବାଡ ହେଇଯିବ।

ରିଚାଙ୍କ ରାଗ ଦେଖି ସାବିତ୍ରୀ ଶଙ୍କିଯାଇ କୌଣସି ଉତ୍ତର ନ ଦେଇ ତଗ ତଗ ହେଇ ତା ଘରକୁ ଚାଲିଯାଇ ଆଉ ଆସିନଥିଲା।

ଆଜି ରାତି ନ ପାହୁଣୁ ପଛପଟ କବାଟ ବାଡେଇ ରିଚାଙ୍କୁ ନିଦରୁ ଉଠାଇ କହିଥିଲା - ମୁଁ ଇଆଡେ ତୁମର କାମ୍ ନାଇ କରିପାରେ ଗୋ ମା।

ଆଖି ମଳି ମଳି ରିଚା ପଚାରିଥିଲେ - କାହିଁକି କ'ଣ ହେଲା ?

ହାତରେ ଧରିଥିବା କାନଫୁଲ ଦେଖାଇ କହିଲା - ମୋର୍ କାନ୍‌ଫୁଲଟା ଇଲାକେ ତାକୁ ଦେଇ ଆସ୍‌ମି।

- ଶେଷରେ ହାର ମାନିଲୁ ?

- କାନ୍‌ଫୁଲ ନାଇ ଦେଲେ ସିଏ ଘରରେ ନାଇ ଆସ୍‌ବ ଗୋ ମା।

ନ ଆସିଲେ ନ ଆସୁ। ସିଏ ତୋର କ'ଣ ସୁବିଧା କରଉଥିଲା କି ? ଓଲଟା ତୋ'ଠୁ ପଇସା ନେଇ ମଦ ପିଉଥିଲା। ଆଖିରୁ ଲୁହ ନିଗାଡି ସାବିତ୍ରୀ କହିଲା - ସିଏ ନାଇଆସ୍‌ଲେ ମୋର ଛୁଆମାନେ କାହାକୁ ବା' ବୋଲି ଡାକ୍‌ବେ ?

ରାଗ ସମ୍ଭାଳି ରିଚା କହିଲେ - ତୁ ଯିବୁଯେ ସିଏ କେଉଁଠି ରହୁଛି ଜାଣିଛୁ ?

- ମୁଁ ପୁଅ ସାଂଗେ ରିକ୍‌ସା ଷ୍ଟାଣ୍ଡକୁ ଯିବି। ସେନ ପଚାର୍‌ମି ଆଉ ତା ଘରକେ ଯିବି।

- ତୁ ଆଜି ମତେ ହଇରାଣ କଲୁ। ମୁଁ ବାରଟାରେ ଫେରିଲେ ତୁ ଘର କାମସବୁ କରିବୁ କହିଦେଇ ରିଚା ତରବର ହେଇ ବାଥ୍‌ରୁମରେ ପଶିଲାବେଳେ ଭାବିଲେ ଯାହାହେଉ ପିଲା ଦୁହେଁ ହଷ୍ଟେଲ ଚାଲିଯାଇଛନ୍ତି, ନ ହେଲେ ଆଜି ଛୁଟି ନେବାକୁ ପଡିଥାଆନ୍ତା।

ରିଚା ଚିଜ୍ ସାଣ୍ଡୱିଚ ଓ ଫଳ ରସ ଗ୍ଲାସେ ଡାଇନିଂ ଟେବ୍‌ଲ ଉପରେ ରଣଜିତଙ୍କ ପାଇଁ ରଖି ନିଜେ ଲେମ୍ବୁ ସରବତ ଗ୍ଲାସେ ପିଇ ଘରୁ ବାହାରିଛନ୍ତି।

ହସ୍‌ପିଟାଲ ସେଡ୍‌ରେ ଗାଡି ରଖି ରିଚା ଭିତରେ ପଶିଲାବେଳେ ଭାବିଲେ - ଆଜି ରାମ ନବମୀ ଯୋଗୁ ଆଉଟ୍‌ଡୋରରେ ରୋଗୀ କମ୍ ହେବେ ତେଣୁ ସେମାନଙ୍କ ହିଷ୍ଟ୍ରି ଭଲକରି ନେଇ ହେବ।

ରିଚା ଦେଖିଲେ ତାଙ୍କ ରୁମ୍ ସାମନାର ତିନି, ଚାରି ଜଣ ରୋଗୀ ସିମେଣ୍ଟ ବେଞ୍ଚରେ ବସିଛନ୍ତି ଓ ଆଟେଣ୍ଡାଣ୍ଟ ତାଙ୍କୁ ଅପେକ୍ଷାକରି ଠିଆହେଇଛି।

ରିଚାଙ୍କୁ ଦେଖିଲାମାତ୍ରେ ରୋଗୀମାନେ ଉଠିପଡି ଲାଇନରେ ଠିଆ ହେଲେ।

ରିଚା ରୁମ୍‌ରେ ପଶି ଭ୍ୟାନିଟି ବ୍ୟାଗରୁ ଷ୍ଟେଥୋ ଓ ପେନ୍ ବାହାରକରି ଚୌକି

ପଛରେ ଟଙ୍ଗା ହୋଇଥିବା ଆପ୍ରୋନ ପିନ୍ଧି ବସି ଆଟେଣ୍ଡାଣ୍ଟଙ୍କୁ ପେସେଣ୍ଟ ପଠାଇବାକୁ କହିଲେ।

ରୋଗୀମାନଙ୍କୁ ଦେଖି ସାରିଲା ପରେ ରିତା ପେନ୍ ରେଜିଷ୍ଟର ଉପରେ ରଖି ଚୌକିରେ ଆଉଜି ସେଠାରୁ ଦିଶୁଥିବା ହସ୍‌ପିଟାଲର ପ୍ରବେଶ ଦ୍ୱାର ଆଡେ ଦେଖିଲେ ଶ୍ୱେତ ବସ୍ତ୍ର ପରିହିତା ମଧ୍ୟମ ସ୍ୱାସ୍ଥ୍ୟର ବୟସ୍କା ମହିଳା ଜଣେ ମନ୍ଥର ଗତିରେ ଆସୁଛନ୍ତି।

ରୋଗୀମାନଙ୍କ ପାଇଁ ଉଦ୍ଦିଷ୍ଟ ଟୁଲରେ ବସିପଡ଼ି ବିଧବା ମହିଳା ଜଣକ ନିଜ ମେଡିକାଲ କାର୍ଡ଼ ରିତାଙ୍କ ହାତକୁ ବଢ଼ାଇଦେଇ ଅନୁରୋଧ କଲାପରି କହିଲେ - ମା, ଦୟାକରି ମତେ ମାସକ ପାଇଁ ବ୍ଲଡପ୍ରେସର ଔଷଧ ଲେଖିଦିଅ।

- ଏଠାରେ କେବଳ ଦୁଇ ସପ୍ତାହ ପାଇଁ ବଟିକା ଦେବାର ବ୍ୟବସ୍ଥା ଅଛି, ଗମ୍ଭୀର ହୋଇ ରିତା କହିଲେ।

ଭାରି ଗଳାରେ ସିଏ କହିଲେ - ମା, ମୁଁ ଅଭାବି ଲୋକ। ପ୍ରତ୍ୟେକ ଚଉଦ ଦିନରେ ରିକ୍‌ସାବାଲାକୁ କୋଡିଏ ଟଙ୍କା ଦେବାକୁ ବାଧୁଛି, ପୁଣି ପଞ୍ଚସ୍ତରୀ ବର୍ଷ ବୟସରେ କାମସାରି ଘରୁ ବାହାରିକି ଆସିବା କଷ୍ଟକର ହେଉଛି।

- ତୁମେ କାହିଁକି ଆସୁଛ ? ପୁଅକୁ ପଠେଇଦେଉନ। ରିତା ଅନ୍ୟତର ଉପାୟ ବତାଇଲେ।

ମହିଳା କୌଣସି ଉତ୍ତର ନ ଦେଇ ମୁହଁ ତଳକୁ ପୋତିଲେ।

ରିତା ପଚାରିଲେ - କ'ଣ ହେଲା ମୁହଁ କାହିଁକି ଶୁଖେଇଲ ?

ଛଳଛଳ ଆଖିରେ ସିଏ କହିଲେ - ପୁଅ ମୋ ପାଖେ ରହୁନି ମା!

- ଓହୋ ପୁଅ ଦୂରରେ ରହୁଛି ବୋଲି ଲାଗୁଛି ତାକୁ ଝୁରି ହେଉଛ ! ସେଥିପାଇଁ ଆଖି ଓଦା ହେଇଗଲା।

ଲୁଗା କାନିରେ ଆଖି ପୋଛି ସିଏ କହିଲେ - ନାଇଁ ମା, ସିଏ ଏଇ ସହରରେ ତା ଶ୍ୱଶୁର ଘରେ ରହୁଛି।

ବିସ୍ମିତ ତଥା, ଦୁଃଖିତ ହୋଇ ରିତା କହିଲେ - ହଉ, ହଉ କାନ୍ଦନି। ମୁଁ ତୁମକୁ ମାସକର ଔଷଧ ଦେଇଦେବି କିନ୍ତୁ ମୁଁ ଜାଣିବାକୁ ଚାହୁଁଛି ତୁମ ପୁଅ ତୁମ ପାଖେ କାହିଁକି ରହିଲାନି।

କୋହଭରା କଣ୍ଠରେ ସିଏ ତାଙ୍କ କାହାଣୀ କହିଲେ - କାରଖାନାରେ କାମ କରୁଥିବା ସମୟରେ ଇଲେକ୍ଟ୍ରିସକ୍ ଲାଗି ତାଙ୍କ ସ୍ୱାମୀଙ୍କର ମୃତ୍ୟୁ ହେଲା। ସେହି କାରଣରୁ ତାଙ୍କୁ କାରଖାନାରେ ଚାକିରି ମିଳିଲା। ବ୍ରାହ୍ମଣ ଘରର ବୋହୂ ହେଇ ମଧ୍ୟ ଅଳ୍ପ ବୟସରେ ପିଲାଙ୍କୁ ମଣିଷ କରିବାପାଇଁ ଘରୁ ଗୋଡ କାଢ଼ିଲେ।

ଜୀବନ ସାରା ଖଟି ଖଟି ଅବସର ନେବା ପୂର୍ବରୁ ଝିଅକୁ ଓ ପରେ ପୁଅକୁ ବିଭାକଲେ।

ଅବସର ନେଲାବେଳେ ଯେଉଁ ଛ'ଲକ୍ଷ ଟଙ୍କା ମିଳିଥିଲା ସେଥିରୁ ଲକ୍ଷେ ଝିଅକୁ। ଦୁଇଲକ୍ଷ ପୁଅକୁ ଓ ପଚାଶ ହଜାରର ଗହଣା ବୋହୂପାଇଁ କିଣେଇ ବାକି ଟଙ୍କା ନିଜେ ଚଳିବା ପାଇଁ ଉପର ଅଫିସରଙ୍କ କଥା ମାନି ବ୍ୟାଙ୍କରେ ନିଜ ନାଁରେ ରଖି ପୁଅକୁ ନୋମିନି କଲେ।

ପୁଅର ଶ୍ୱଶୁରଘର ଲୋକ ତାକୁ ଶିଖାଇଲେ - ତୁମେ ତ ଗୋଟିଏ ପୁଅ। ତୁମ ମା ତୁମ ନାଁରେ କାହିଁକି ଟଙ୍କା ରଖିଲେନି ? ସେଇ କଥାରେ ପୁଅ ଘରଛାଡି ଚାଲିଗଲା।

ତୁମେ କେମିତି ଚଳୁଛ ? ରିତା ପ୍ରଶ୍ନ କଲେ।

ଦୀର୍ଘନିଶ୍ୱାସଟିଏ ପକେଇ ସିଏ କହିଲେ - ମତେ ମାସକୁ ବ୍ୟାଙ୍କରୁ ସୁଧ ପନ୍ଦରଶହ ଟଙ୍କା ଓ ଫ୍ୟାମିଲି ପେନସନ ଚାରିଶହ ଷାଠିଏ ଟଙ୍କା ମିଳେ। ସେଥିରୁ ଆଠଶହ ଘରଭଡା ଦେଇ ମୁଁ ଚଳୁଛି ମା। ଯାହାହେଉ ଘରବାଲା ହିଟର ଜଳାଇବାକୁ ଦେଉଛି ନ ହେଲେ ସେତିକି ଟଙ୍କାରେ ଆଦୌ ଚଳିପାରନ୍ତିନି।

- ତୁମେ ଝିଅ ପାଖକୁ ଚାଲିଯାଉନ - ରିତା କହିଲେ

ଅଟକି ଯାଇଥିବା ଲୁହ ଝରାଇ ସିଏ କହିଲେ ଝିଅ ଆରପାରି ଯିବାର ଆଜିକୁ ଦଶବର୍ଷ ହେଇଗଲାଣି ମା। ଆକ୍ସିଡେଣ୍ଟରେ ଝିଅ ଚାଲିଗଲା ବୋଲି ମୋର ଯେତେ ଦୁଃଖ ତା ଠାରୁ ଅଧିକ ଦୁଃଖ ସିଏ ଯାହା ସାଙ୍ଗେ ପନ୍ଦରବର୍ଷ ସଂସାର କରିଥିଲା ସିଏ ଝିଅ ମରିବାର ଦୁଇମାସ ନ ଯାଉଣୁ ପୁର୍ନବିବାହ କରି ମୋ ସହିତ ସଂପର୍କ କାଟିଦେଲେ। ନାତି, ନାତୁଣୀଙ୍କୁ ମଧ୍ୟ ମୋ ପାଖକୁ ଆସିବାକୁ ଦିଅନ୍ତି ନାହିଁ।

କବାଟ ପାଖେ ରୋଗୀଟିଏ ଠିଆ ହେବାର ଦେଖି ରିତା ପ୍ରେସକ୍ରିପ୍‌ସନ ଚିଠାଟା ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ - ତୁମେ ଡିସପେନ୍‌ସରି ରୁ ବଟିକା ଆଣି ଆସ। ତୁମ ସାଙ୍ଗେ କଥା ଅଛି। ସିଏ ଔଷଧ ଆଣି ଆସିଲାମାତ୍ରେ ରିତା ବ୍ୟାଗରୁ କାଢ଼ିରଖିଥିବା ଦୁଇଶହ ଟଙ୍କା ତାଙ୍କ ହାତରେ ଧରାଇ କହିଲେ - ମନା କରନି।

ଟଙ୍କା ଦେଖି ସଂକୁଚିତ ହୋଇ ସିଏ କହିଲେ - ନାଇଁ ମା, ମୁଁ ଚଳିଯାଉଛି। ତୁମେ ଟଙ୍କା କାହିଁକି ଦେଉଛ ?

ରିତା ତାଙ୍କ ହାତଧରି ଅଭିମାନ କଲାପରି କହିଲେ - ମୁଁ ଯଦି ତୁମ ଝିଅ ହେଇଥାଆନ୍ତି ମନା କରିଥାଆନ୍ତ ?

ସିଏ ଅବାକ୍ ହେଇ ରିତାଙ୍କୁ ଚାହିଁଲାବେଳେ ରିତା କହିଲେ ଏଥର ପ୍ରତ୍ୟେକ ମାସରେ ଔଷଧ ନେଲାବେଳେ ମୋଠାରୁ ଟଙ୍କା ନେଇଯାଉଥିବ। ହଁ ଆଉ ଗୋଟେ

କଥା, ମତେ ଲାଗୁଛି ତୁମକୁ ପୁରୁଣା ହାରରେ ସୁଧ ମିଳୁଥିବାରୁ ଅଢ଼େଇଲକ୍ଷରେ ମାସକୁ ପନ୍ଦରଶହ ଟଙ୍କା ମିଳୁଛି। ତୁମେ ଏବେ ସେ ଟଙ୍କା ଉଠାଇ ଆଉଥରେ ଫିକ୍ସ ଡିପୋଜିଟ କରିଦେଲେ ତୁମକୁ ପ୍ରାୟ ଦୁଇହଜାର ଟଙ୍କା ମିଳିବ। ଏବେ ସିନିଅର ସିଟିଜେନମାନଙ୍କୁ ଦଶ ପର୍‌ସେଣ୍ଟ ପାଖାପାଖି ସୁଧ ମିଳୁଛି।

"ହଉ କେତେବେଳେ ସମୟ ଦେଖି ବ୍ୟାଙ୍କ ଯିବି" କହି ରିଚାଙ୍କୁ ଅଜସ୍ର ଆଶୀର୍ବାଦ କରି ସିଏ ଫେରିଲେ।

କିଛି ସମୟ ଅନ୍ୟମନସ୍କ ହେଇ ରିଚା ପୁଣି ରୋଗୀ ଦେଖାରେ ମନ ଦେଲେ।

ଉଦାସ ଦିଶୁଥିବା ଜଣେ ଦୁର୍ବଳ ମହିଳା ଆସି ରିଚାଙ୍କ ହାତକୁ ମେଡିକାଲ କାର୍ଡଟି ବଢ଼େଇ ଥଙ୍ଗେଇ ଥଙ୍ଗେଇ କହିଲେ - ଆଜ୍ଞା ମୋ ହାତଗୋଡ ସବୁବେଳେ ବିନ୍ଧୁଛି। ଖାଇବାକୁ ଇଚ୍ଛା ହେଉନି, ଦେହ ଅବଶ ଲାଗୁଛି ଓ ରାତିରେ ନିଦ ବି ହେଉନି।

ଆଖି ତଳ କଳାପଡି ମାନସିକ ରୋଗୀ ଭଳି ଦିଶୁଥିବା ମହିଳାଙ୍କ ଆଡେ ରିଚା ଚାହିଁ ଦେଖିଲେ ଦରମଇଳା ସୂତା ଶାଢ଼ୀ ପିନ୍ଧିଥିବା ମହିଳାଙ୍କ ସିନ୍ଥାରେ ସିନ୍ଦୂର, ବେକରେ କଳାସୂତା ଓ ହାତରେ ମୁଠାଏ ଲେଖେଁ ପାଣିକାଚ।

ମେଡିକାଲ କାର୍ଡଟି ତାଙ୍କ ହାତରୁ ନେଇ ରିଚା ପଚାରିଲେ - ତୁମ ବୟସ ?

- ଛତିଶ।

ଆଚମ୍ବିତ ହୋଇ ରିଚା ପଚାରିଲେ - ତୁମକୁ ମାତ୍ର ଛତିଶ ବର୍ଷ ତୁମେ ଛପନ ବର୍ଷ ପରି କାହିଁକି ଦିଶୁଛ ? ତୁମେ କ'ଣ ଚାକେରୀ କର କି ?

- ନାଇଁ ଆଜ୍ଞା

- ଘରେ କିଏ, କିଏ ଅଛନ୍ତି ?

- ମୋ ସ୍ୱାମୀ, ଦଶବର୍ଷର ପୁଅ ଓ ଶାଶୁ।

- ତାହେଲେ ତୁମର କ'ଣ ଅସୁବିଧା ହେଉଛି ? ଚାରିଆଡେ ସତର୍କଦୃଷ୍ଟି·ବୁଲେଇ ଦେଇ ନିମ୍ନ ସ୍ୱରରେ ସିଏ କହିଲେ - ମୋ ସ୍ୱାମୀ ଗୋଟିଏ ପୁଅ ହେଇଥିବାରୁ ଶାଶୁଙ୍କର ସବୁ କଥା ମାନନ୍ତି ଓ ତାଙ୍କ କଥାରେ ଘର ଚାଲେ। ସେ ଘରେ ମୋର କୌଣସି ଅସ୍ତିତ୍ୱ ନାହିଁ।

ସିଏ ସୁଁ ସୁଁ କାନ୍ଦିବାର ଦେଖି ରିଚା ସାନ୍ତ୍ୱନା ଦେଇ କହିଲେ - ତୁମେ ଏଇକଥାକୁ ମାନ କରି ଅକାଳ ବାର୍ଦ୍ଧକ୍ୟକୁ ପାଛୋଟି ଆଣୁଛ। ତୁମେ ସେ ମା ପୁଅଙ୍କ କଥା ଛାଡି ନିଜ ପୁଅ କଥା ଚିନ୍ତା କର। ତୁମେ ଏମିତି ମନ ମାରି ନଖାଇ ନପିଇ ମରିଗଲେ ଶାଶୁ ତା ବାସିଦିନ ଆଉ ଗୋଟେ ବୋହୂ ଘରକୁ ଆଣିବେ। ସେତେବେଳେ ତୁମ ପୁଅକୁ କିଏ ଦେଖିବ ?

ଲୁହ ଟଳମଳ ଆଖିରେ ଶୂନ୍ୟକୁ ଅନେଇଥିବା ସ୍ତ୍ରୀଲୋକଟି ପାଇଁ ଭିଟାମିନ୍ ବଟିକା ଲେଖି ରିଚା କହିଲେ - ଧୈର୍ଯ୍ୟ ଧର ସମୟ ସବୁ ଠିକ୍ କରିଦେବ। ଆଉ ପନ୍ଦର, କୋଡିଏ ବର୍ଷ ପରେ ତୁମରି କଥାରେ ତୁମଘର ଚାଲିବ।

ସିଏ ଅବିଶ୍ୱାସ ଭରା ଆଖିରେ ରିଚାଙ୍କୁ ଚାହିଁଲେ।

ରିଚା ତାଙ୍କ ହାତକୁ ବଟିକା ବଢ଼େଇଦେଇ ଟିକେ ଝୁଙ୍କିଯାଇ ତା କାନ୍ଧ ଉପରେ ସସ୍ନେହ ହାତରଖି କହିଲେ - ନିଜର ଯତ୍ନ ନିଅ। ମଝିରେ ମଝିରେ ଆସି ଏଇ ବଟିକା ନେଇ ଖାଅ, ଆଉ ପନ୍ଦର କୋଡିଏ ବର୍ଷ ପରେ ଯେତେବେଳେ ମୋ ଭବିଷ୍ୟତ ବାଣୀ ସତ ହେବ ସେତେବେଳେ ମତେ ନିଶ୍ଚେ ମନେପକାଇବ।

ଶୁଖିଲା ହସଟେ ହସି ସିଏ ଟୁଲ୍‌ରୁ ଉଠିଲେ ଏବଂ ରିଚା ଅନ୍ୟରୋଗୀ ଆସିବାଯାଏ ଭାବନାରେ ମଗ୍ନ ରହିଲେ।

ହସପିଟାଲର ମୁଖ୍ୟଦ୍ୱାର ପାଖେ ରିକ୍‌ସାରୁ ଓହ୍ଲାଇ ଅବିର ରଂଗର ଶାଢ଼ୀ ପିନ୍ଧିଥିବା ବୃଦ୍ଧା ମହିଳାଜଣକ ନଇଁ ନଇଁ ରିଚାଙ୍କ ପାଖକୁ ଆସି ଟୁଲରେ ବସିଲେ।

ନବବିବାହିତା ତରୁଣୀ ପରି ସଜେଇ ହେଇ ସବୁବେଳେ ଡାକ୍ତରଖାନାକୁ ଆସୁଥିବା ଅଶୀବର୍ଷର ବୃଦ୍ଧାଙ୍କୁ ରିଚା ଅନେଇଲେ। ତାଙ୍କ ରେଖାପୂର୍ଣ୍ଣ କପାଳରେ ଚାରଣି ଆକାରର ସିନ୍ଦୂର ଟୋପା, ସିନ୍ଥାର ସିନ୍ଦୂର କପାଳ ଉପରକୁ ଯଥେଷ୍ଟ ମାଡି ଆସିଛି। ବିଲୁପ୍ତ ହେଇ ଆସୁଥିବା ମସ୍ତକର ଧଳା ଚୁଟିରେ ଅନଭ୍ୟସ୍ତ ହାତରେ ରଂଗ କରାହେଇଥିବାରୁ ମଝିରେ ମଝିରେ ଧଳା ଚୁଟିମାନେ ଉଙ୍କିମାରି ନିଜର ଉପସ୍ଥିତି ଜାହିର କରୁଛନ୍ତି। ନାକରେ ନାକ ଚଣା। ଶୀର୍ଣ୍ଣ ବେକରେ କଣ୍ଠିମାଳ, ଶିରାଳ ହାତରେ କହୁଣୀଯାଏ ଲାଲ ଶଙ୍ଖା ଓ ଚୁଡିର ସମାରୋହ। ନଖରେ ନେଲ୍‌ପଲିସ।

ରିଚାଙ୍କୁ ଆଉ ଅଧିକା ନିରୀକ୍ଷଣ କରିବାକୁ ନ ଦେଇ ବୃଦ୍ଧାଜଣକ ମେଡିକାଲ କାର୍ଡଟିକୁ ଟେବୁଲ ଉପରକୁ ଫିଙ୍ଗିଦେଇ ରିଚାଙ୍କ ଡାହାଣ ହାତକୁ ଟାଣିନେଇ ନିଜ ମଥା ଉପର ରଖି ପାନ ଚୋବାଉଚୋବାଉ କହିଲେ - ଦେଖୁନ୍ ବୁଢ଼ା ମତେ କେମିତି ପିଟିଛି।

ରକ୍ତଜମାଟ ବାନ୍ଧି ବାଟୁଳି ପରି ହେଇଯାଇଥିବା ଦେଖି ରିଚା ପଚାରିଲେ - ବୁଢ଼ା କାହିଁକି ମାରିଲେ ?

ସେଇ ପ୍ରଶ୍ନକୁ ଅପେକ୍ଷା କରିଥିବା ବୃଦ୍ଧା ଅନର୍ଗଳ କହିଚାଲିଲେ - ଶୁନୁନ୍ ଆଜି ସକାଳେ ମୁଇଁ ଫୁଲ୍ ତୋଳିସାରି ଗାଧେଇତେ ଯାଇଛି, ଠାକୁର୍‌ମାନଙ୍କୁ ପୋଛାପୋଛି ନାଇକରି, ସିନ୍ଦୁର ଚନ୍ଦନ କିଛି ନାଇ ଦେଇକରି ବାସି ଦେବ୍‌ତାମାନଙ୍କୁ ବୁଢ଼ା ଫୁଲ୍ ଚଢ଼େଇଛି। ଦେଖିକରି ମୋକେ ରାଗ୍ ନାଗିଲା। ସେଇନାଗି ମୁଁ ପାଟି କଲାରୁ ବୁଢ଼ା ମୋର୍ ମଥାକେ ପିଟିଦେଲା।

ବେଳେବେଳେ ହସ୍‌ପିଟାଲ ଆସୁଥିବା ବୁଢ଼ାର ଚେହେରା ରିଚାଙ୍କ ଆଖିରେ ନାଚିଉଠିଲା। ଧଳା ଫିନ୍ ଫିନ୍ କୁର୍ତ୍ତା ପାଇଜାମା ପିନ୍ଧି ସଳଖ ଚାଲୁଥିବା ବୁଢ଼ା ଯିଏ ଆଖିରେ ସୁରମା ଲଗାଏ, ଯାହାର ତୁଷାର ଭଳି ଶୁଭ୍ର ଘନ ନିଶ ଉପର ଓଠକୁ ଆବୋରି ଥାଏ ଓ ମଥାର ଲମ୍ବା ଚୁଟି ବ୍ୟାକ୍ ବ୍ରସ ହୋଇଥାଏ।

ରିଚା ଚିଡ଼ିଯାଇ ସେଇ ବୁଢ଼ା ପାଇଁ ଶିଙ୍ଗାର କରୁଥିବା ବୁଢ଼ୀଙ୍କୁ ପଚାରିଲେ - ସିଏ ମାରିଲେ ଆଉ ତୁମେ ମୁଣ୍ଡପାତି ସବୁ ସହିଲ ?

- କି କରିବି ? ମୁଁ ତଳେ ପଡିଗଲି ଆଉ ବୁଢ଼ା ମତେ ଠିଆ ଗୋଇଠା ମାରିତେ ନାଗିଲା।

ଜୀବନର ଶେଷ ପାହାଚରେ ଠିଆ ହୋଇଥିବା ବୃଦ୍ଧାଙ୍କୁ ତ ରିଚା ଧୈର୍ଯ୍ୟ ଧରି ସମୟ ଆସିଲେ ସବୁ ଠିକ୍ ହୋଇଯିବ କହି ପାରିବେନି। ତେଣୁ ରିଚା ତାଙ୍କୁ ଲଢ଼ିବାପାଇଁ ଆହ୍ୱାନ ଦେଇ କହିଲେ - ସାମାନ୍ୟ ପିମ୍ପୁଡ଼ି ଉପରେ ଗୋଡ ପଡିଗଲେ ସିଏ କାମୁଡି ଦେଉଛି। ନିଜକୁ ରକ୍ଷା କରିବାପାଇଁ ଭଗବାନ ତୁମକୁ ହାତ, ଗୋଡ଼, ନଖ, ଦାନ୍ତ ଆଦି କିଛି ଦେଇନାହାନ୍ତି ?

ରିଚାଙ୍କ ହାତ ଉପରେ ହାତ ରଖି ମୃଦୁ ସ୍ୱରରେ ସିଏ କହିଲେ - ମିଛ କାହିଁକି କହିବି ? ମୁଁ ତଳୁ ଉଠି ନପାରି ବୁଢ଼ାକେ ଶୁଆ ଗୋଇଠା ମାରିଲି।

ତାଙ୍କ ପାଖରୁ ସନ୍ତୋଷଜନକ ଉତ୍ତର ପାଇ ଉଲ୍ଲସିତ ହୋଇ ରିଚା ପଚାରିଲେ - ତାପରେ ସିଏ କଣ କଲେ ?

- ବୁଢ଼ା ସେଠାନୁ ଭାଗିଲା।

ରିଚା ଚାରିଟା ଆନାଲ୍‌ଜେସିକ ବଟିକା ଲେଖିଦେଇ ତାଙ୍କ ହାତକୁ ବଢ଼ାଇଦେଇ କହିଲେ - ଫୁଲିଯାଇଥିବା ମୁଣ୍ଡରେ ବରଫ ଘସିବ ଏବଂ ଏ ବଟିକା ଦିନକୁ ଦୁଇଥର ଖାଇବ।

ସିଏ ମେଡିକାଲ କାର୍ଡ ଓ ବଟିକା ହାତରେ ଧରି ଧରି ପୁଣି କହିଲେ - ବୁଢ଼ା ଆଜିକାଲି ମାଛ, ମାଉଁସ ଖାଇତେ ଖୋଜୁଛି। କାଲି ଭାତ ଖାଇଲାବେଳେ ଆଳୁ, ପୋଟଳ ତରକାରୀ ଦେଖି ନାଇ ଖାଇବି କହିଲାରୁ ବୋହୂ କହିଲା ସକାଳେ ତ ଦୁଇଟା ଅଣ୍ଡାର ଭଜା ଖାଇଛ। ଏଇନାଗେ ଆଇଁଷ ନାଇଁ ଖାଇଲେ କି ହେଲା ?

ବୁଢ଼ା ବୋହୂକେ କହିଲା - ମୋର ପୁଅକେ ମୁଇଁ ଇଞ୍ଜିନିୟର କରିଛି। ସିଏ ଏତେ ଟଙ୍କା ରୋଜଗାର କରି ଆଣୁଛି, ମୁଇଁ ରୋଜ ମାଛ, ମାଉଁସ ନାଇ ଖାଇପାରେ ? ତୁମର ବାବା ମୋର ପୁଅକେ ଇଞ୍ଜିନିୟରିଂ ପଢ଼େଇଛି କି ?

ବୁଢ଼ା କଥା ଶୁଣି ବୋହୂ କେତେ କାନ୍ଦିଲା। ମୁଇଁ କହିଲି ନାଇଁ କାନ୍ଦ, ବୁଢ଼ା କଥା ନାଇଁ ଧର।

ରିଚା ଜାଣିପାରିଲେ ବୃଦ୍ଧା ତାଙ୍କ ସ୍ୱାମୀଙ୍କୁ ପଦାଘାତ କରିଥିବାରୁ ଅପରାଧବୋଧରୁ ଉଦ୍ଧାର ପାଇବା ପାଇଁ ବୁଢ଼ା କେତେ ଖରାପ ରିଚାଙ୍କୁ ଜଣାଇବା ଲାଗି ତାଙ୍କର ଅନ୍ୟ ଦୁର୍ଗୁଣ ସବୁ ବଖାଣୁଛନ୍ତି।

ଏହି ସମୟରେ ମୋବାଇଲ ବାଜିବାରୁ ରିଚା ବୃଦ୍ଧାଙ୍କୁ ତୁମ କଥା ତୁମେ ଦେଖ। ବୋହୂ ତା କଥା ବୁଝିବ କହି ବିଦା କରି ଫୋନ ଧରି 'ହାଲୋ' କହିଲେ।

ସେପଟୁ ରଣଜିତ କହିଲେ - ବୋଉ କାଲି ସକାଳେ ଟ୍ରେନରେ ଆସି ପହଞ୍ଚିବ। ତା ଦେହ ଭଲନାହିଁ। ତୁମେ କାଲିଠାରୁ ସାତଦିନ ପାଇଁ ଛୁଟି ଆପ୍ଲାଏ କରିଦିଅ।

ରିଚା କହିଲେ - ତୁମେ ଛୁଟି ନେଉନ।

- ମୁଁ ନେଇପାରିବିନି। ମୋର ବୋର୍ଡ୍ ଅଫ ଡାଇରେକ୍ଟର ମିଟିଂ ଅଛି।

- କିନ୍ତୁ ଏବେ ତ ଡାକ୍ତର ଏତେ ସର୍ଟେଜ। ମତେ ଛୁଟି ମିଳିବା ମୁସ୍କିଲ ହେବ।

- କୁହ ମୋ ଶାଶୁଙ୍କ ଦେହ ଖରାପ ମତେ ଯେମିତି ହେଲେ ଛୁଟି ଦରକାର।

ରିଚା କୌଣସି ଉତ୍ତର ନ ଦେଇ ଫୋନ କାଟିଲେ।

# ମନର ମହକ

ଲନ୍ ପାଖରେ ଷ୍ଟିଲ ବାଲ୍‌ଟିରେ ପାଣି ଓ ମଗ୍ ରଖିସାରିବା ପରେ ରିଚା ମିଶ୍ର କାଚଘେରା ବାରଣ୍ଡାକୁ ଆସି ବେତ ଚୌକିରେ ବସିଲେ।

ତାଙ୍କ ସାମନା ସେଣ୍ଟର ଟେବୁଲ ଉପରେ ଚାରୋଟି କାଚ ଗିନାରେ ଗୋଲାପି, ସବୁଜ, ହଳଦୀ ଓ କମଳା ରଂଗର ଫଗୁ, ପାଖ ଟ୍ରେରେ ଉଗୁଡା ହୋଇଥିବା ଛ'ଟି କ୍ରିଷ୍ଟାଲ ଗ୍ଲାସ ସହ ଥଣ୍ଡାପାଣି ଭରା ହେଇଥିବା ଥରମସର ଜଗ୍। ଅନ୍ୟ ଏକ ଦୁଇଥାକିଆ ଟେବୁଲର ଉପର ଥାକରେ ଲବଙ୍ଗଲତା, ଲଡୁ, ନିମ୍‌କିଥିବା ପଟ୍ ଏବଂ ତଳ ସେଲ୍‌ଫରେ ଚଉତା ଟର୍କିସ ଟାୱେଲ। ଖାଦ୍ୟରେ ପିମ୍ପୁଡ଼ି ନ ଲାଗିବା ପାଇଁ ଟେବଲର ଗୋଡ ଚାରିପାଖେ ହିଟ୍ ସ୍ପ୍ରେ କରାହୋଇଛି।

ହୋଲିଦିନ ଏ ସବୁ ସଜାଡି ରଖିବା ରିଚାଙ୍କର ବହୁତ ବର୍ଷର ଅଭ୍ୟାସ। ପିଲାମାନେ ଛୋଟ ଥିବାବେଳେ ସିଏ ଘରେ ବିଭିନ୍ନ ପ୍ରକାରର ମିଠା, ନମ୍‌କିନ ତିଆରି କରୁଥିଲେ। ଆଜିକାଲି ଦୋକାନରୁ କିଣି ଆଣୁଛନ୍ତି।

ରଣଜିତ ଚାକିରିରୁ ଅବସର ନେଇ ସ୍ୱଗୃହରେ ଅବସ୍ଥାନ କରିବା ଦିନରୁ ସବୁ ଲୋକମାନେ ତାଙ୍କୁ ଭୁଲିଗଲେଣି। ସିଏ ଡାଇରେକ୍ଟର ଥିବାବେଳେ ତାଙ୍କ ସହକର୍ମୀ ଓ ଅଧସ୍ତନ କର୍ମଚାରୀମାନେ ହୋଲିଦିନ ଘରକୁ ଆସି ଭିଡ ଜମାଉଥିଲେ। ସେମାନଙ୍କ ପତ୍ନୀମାନେ ଆସି ରିଚାଙ୍କ ସହ ରଂଗ ଖେଳିସାରି ଦହିବରା, ଆଳୁଦମ, ପିଆଜି, ମାଲପୁଆ ଆଦି ଖାଇ ଫେରୁଥିଲେ।

ଗତ ତିନିବର୍ଷ ହେଲାଣି ରିଚା ହୋଲି ଦିନ ଧଳାବ୍ଲାଉଜ ସାଙ୍ଗରେ ନାଲି ବର୍ଡର ଧଳାଶାଢ଼ୀ ପିନ୍ଧି ରଂଗ ମଖାହେବା ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଇ ରହୁଛନ୍ତି। ରଣଜିତ ଚାକିରିରେ ଥିଲାବେଳେ ଯେଉଁ ଲୋକମାନଙ୍କୁ ସାହାଯ୍ୟ କରିଥିଲେ ସେମାନଙ୍କ ପୁଅ, ନାତିମାନେ କେବେକେବେ କୃତଜ୍ଞତା ଜଣାଇବା ପାଇଁ ମିଠା ପ୍ୟାକେଟ ଧରି ପହଞ୍ଚି ରିଚା

ଓ ରଣଜିତଙ୍କ ପାଦରେ ସଂକୁଚିତ ହେଇ ଚିମୁଟେ ଲେଖାଏଁ ଫଗୁ ପକାଇ ପ୍ରଣାମ କରି ଆଶୀର୍ବାଦ ନେଇ ଫେରିଥାଆନ୍ତି ଏବଂ ରିତାଙ୍କ ଧଳା ଫିନ୍ ଶାଢ଼ୀ ସେମିତି ବେଦାଗ ରହିଯାଏ।

ବାରଟା ବାଜିବାକ୍ଷଣି ରିତା ନିରାଶ ହୋଇ ସଜାଡି ରଖିଥିବା ଅବିର, ମିଠା, ପାଣିଗ୍ଲାସ ଆଦି ଫେରାଇ ଆଣନ୍ତି ଓ ଶାଢ଼ୀଟି ବଦଳାଇ ଆସନ୍ତା ବର୍ଷ ପାଇଁ ସାଇତି ରଖନ୍ତି।

ରିତା ଦୀର୍ଘନିଶ୍ୱାସ ପକାଇ ବାରଣ୍ଡା ଚୌକିରୁ ଉଠି ଘରକୁ ଆସି ଦୂରରେ ଥିବା ପୁଅ, ଝିଅଙ୍କୁ ହୋଲିର ଶୁଭେଚ୍ଛା ଜଣାଇ ସାରି ଦୁଇକପ୍ କଫି ତିଆରି କରି କମ୍ପ୍ୟୁଟରରେ କାର୍ଡ ଖେଳୁଥିବା ରଣଜିତଙ୍କୁ କପେ ଦେଇ ନିଜେ ଡାଇନିଂ ଚେୟାରରେ ବସି ଗରମ କଫିରୁ ଢ଼ୋକେ ପିଇବାମାତ୍ରେ ଧୂମାୟିତ କଫିର ବାସ୍ପ ରିତାଙ୍କ ବରଫ ପରି ଭାରି ମନକୁ ବାଦଲ ପରି ହାଲ୍‌କା କରି ପଚାଶବର୍ଷ ତଳର ଅତୀତକୁ ଉଡେଇନେଲା।

ସେଠି ସାତବର୍ଷର ଝିଅ ରିତା ଅଗଣାରେ ଠିଆ ହେଇ ଆଖିଖୋଲି ସ୍ୱପ୍ନ ଦେଖୁଥିଲା। କାଲି ସକାଳେ କେତେବେଳେ ଉଠିବ, କେମିତି ରାସ୍ତାରେ ଯାଉଥିବା ଲୋକଙ୍କ ଉପରେ ରଂଗ ପକାଇବ। କେଉଁ ଫ୍ରକ ପିନ୍ଧିବ।

ଫ୍ରକ କଥା ମନରେ ଆସିବା ମାତ୍ରେ ରିତା ରୋଷେଇ ଘରକୁ ଯାଇ ବୋଉକୁ ପଚାରିଲା - କାଲି ମୁଁ କୋଉ ଫ୍ରକ ପିନ୍ଧି ହୋରି ଖେଳିବି ?

ତାଓ୍ୱାରେ ଚକୁଳି ପକାଇଥିବା ବୋଉ ଚୁଲୀକୁ କାଠ ମୁହାଇଁ କହିଲା - ତୋ ଫ୍ରକ ମୁଁ ପୁରୁଣା ଟ୍ରଙ୍କରୁ କାଢ଼ି ମଝିଘର ଖଟ ବାଡରେ ରଖିଦେଇଛି।

ରିତା ଦୌଡ଼ିଯାଇ ଖଟରେ ଚଢ଼ି ଫ୍ରକଟି ଉଠାଇ ନିଜ ଦେହରେ ପକାଇ ଦେଖିଲା ରଂଗଛଡା ଫ୍ରକଟି ଏକଦମ୍ ଛୋଟ ପୁଣି ଅଣ୍ଟା ପାଖରୁ ଚିରି ବି ଯାଇଛି।

ମନଦୁଃଖରେ ରିତା ଫ୍ରକଟି ହାତରେ ଧରି ଖଟରୁ ଓହ୍ଲାଇ ବୋଉ ପାଖକୁ ଆସି ଛଳ ଛଳ ଆଖି କରି କହିଲା - ମୁଁ ଏ ଚିରା, କୋତରା, ଛୋଟ ଫ୍ରକ ପିନ୍ଧିବିନି।

ବୋଉ ତାଓ୍ୱାରୁ ଚକୁଳିଟା ସାନନାନୀ ଥାଳିରେ ପକାଇସାରି ରାଗିକି ରିତା ଆଡେ ଚାହିଁ ବଡ ପାଟିରେ କହିଲା - ତତେ କ'ଣ ଗୋଟେ ଅର୍ଖନୂଆ ଜାମାଟେ ଦେବି ହୋରି ଖେଳିବାକୁ ?

ରିତା ଫ୍ରକକୁ ଚଟାଣରେ ଫିଙ୍ଗିଦେଇ କାନ୍ଦିବାରେ ଲାଗିଲା।

ବୋଉପାଖେ ବସି ଆଚାର ଲଗେଇ ଗରମ ଚକୁଳି ଖାଉଥିବା ସାନନାନୀ ପିଢ଼ାରୁ ଉଠି ଫ୍ରକ୍‌ଟିକୁ ବାଁ ହାତରେ ଟଳୁ ଉଠାଇ ଏପଟ ସେପଟ କରି ଦେଖିସାରି ରିତାକୁ ଆଶ୍ୱାସନା ଦେଇ କହିଲା - ତୁ କାନ୍ଦନା। ମୁଁ ମେସିନରେ ସିଲେଇ କରିଦେବି ଆଉ ତଳର ହେମ୍‌ଟା ଖୋଲିଦେବି ଯେ, ଜାମାଟା ଲମ୍ବା ହେଇଯିବ।

ରିଟା ପିନ୍ଧିଥିବା ଫ୍ରକ୍‌ର ଘେରଟ୍ରେ ଲୁହ ପୋଛି କୋହମିଶା ସ୍ୱରରେ ପଚାରିଲା - ସତ କହୁଛୁ ?

- ହଁ, ହଁ ପୂରା ସତ - ନାନୀ ନିଜ କାନ୍ଧରେ ଫ୍ରକଟା ପକେଇ ପିଢ଼ାରେ ବସୁ ବସୁ କହିଲା ।

ହୋରି ଦିନ ପାହାନ୍ତିଆରୁ ରିଟାର ନିଦ ଭାଙ୍ଗିଗଲା, ଅନାଇ ଦେଖିଲା ଖୋଲା ଝରକା ପଟୁ ଆଲୁଅ ଟିକେ ଟିକେ ଆସୁଛି ଓ କାଉମାନେ କା, କା ରାବୁଛନ୍ତି ।

ରିଟା ପାଖରେ ତାଠାରୁ ଦୁଇବର୍ଷ ସାନଭଉଣୀ ରିନା ଶୋଇଛି, ପାଖ ଖଟରେ ବାପା ଓ କୁନି ଭାଇ । ଏଇ ବଖରାକୁ ଲାଗିରହିଥିବା ଅନ୍ୟ ବଖରାରେ ଗୋଟେ ଖଟରେ ବୋଉ ସାଥିରେ କୁନି ଭଉଣୀ, ଆଉ ଗୋଟେ ଖଟରେ ଦୁଇ ନାନୀ ସମସ୍ତେ ନିଘୋଡ ନିଦରେ ଶୋଇଛନ୍ତି ।

ଉପର ମହଲାରେ ଶୋଇଥିବା ଦୁଇ ଭାଇନା ମଧ୍ୟ ଏବେଯାଏ ଉଠିନାହାନ୍ତି, ନ ହେଲେ ଖୁଡ୍‌ଖାଡ୍ ଶୁଭନ୍ତାଣି ।

ରିଟା ମଶାରୀ ଟେକି ଖଟରୁ ଓହ୍ଲାଇ ବୋଉ ଉଠିପଡିବା ଡରରେ ଖୁବ ସାବଧାନରେ ଦୁଇ କୋଠରୀକୁ ସଂଯୋଗ କରୁଥିବା କବାଟଟି ଆଉଜାଇ ଦେଇ ବାପାଙ୍କ ପାଖକୁ ଯାଇ ମଶାରି ବାହାରୁ ବାପାଙ୍କ ଦୁଇପାଦକୁ ହଲାଇ ଧୀରେ ଧୀରେ କହିଲା - ବାପା, କବାଟ ଖୋଲିଦିଅ । ସକାଳ ହେଲାଣି ।

ବାପାଙ୍କ ନିଦ ଭାଙ୍ଗିଗଲା ଓ ସିଏ କହିଲେ - ନାଇଲୋ ମା । ରାତି ଆହୁରି ପାହିନି । ଯା ଆଉଟିକେ ଶୋଇପଡ ।

ବାପା ନ ଉଠିବାର ଦେଖି ରିଟା ବାପାଙ୍କ ମଶାରି ଟେକି ବାପାଙ୍କ ପାଦରେ ତାର କୁନି କୁନି ହାତରେ ଚାପିଦେଇ କହିଲା - ବାପା, କବାଟ ଖୋଲିଦିଅ । ମତେ ଜୋରରେ ଏକ ଲାଗୁଛି । ବାପା ବ୍ୟସ୍ତ ହେଇ "ହଉ, ହଉ ମୁଁ ଉଠୁଛି" କହି ମଶାରି ଟେକି ଖଟରୁ ଓହ୍ଲାଇଲା ମାତ୍ରେ ରିଟା ଖଟତଳୁ ବାପାଙ୍କ ହାୱାଇ ଚପଲ ହଳକ ଟାଣିଆଣି ସାମନାରେ ରଖିଦେଲା । ବାପା ଚପଲ ବିନା ପାହୁଣ୍ଡେ ଚାଲନ୍ତିନି । ବାପା ଚପଲ ପିନ୍ଧିସାରି ଲୁଙ୍ଗି ଭଳି ପିନ୍ଧିଥିବା ଧୋତିର ଗଣ୍ଠିଟା ଭଲ କରି ପକାଇ ରିଟାର ହାତ ପାଉନଥିବା ଡ଼ିଙ୍କିଆକୁ ଖୋଲିଲା ମାତ୍ରେ ରିଟା କବାଟକୁ ଦୁଇ ହାତରେ ଠେଲି ପଢ଼ାଘରକୁ ଦୌଡିଯାଇ ଚୌକିଟିଏ ଟାଣି ତା ଉପରେ ଛିଡାହେଇ କାନ୍ଥ ଆଲମାରି ଖୋଲି ବହି ଥାକରେ ଲୁଚାଇଥିବା ରଂଗ ପୁଡିଆର ଠୁଙ୍ଗା ବାହାର କରି ଦେଖିଲା ପୁଡିଆ ସବୁ ଠିକ ଅଛି ।

ଗୋଟେ ପୁଡିଆରେ ସବୁଜ ଚିନିଭଳି ଦିଶୁଥିବା 'ମୁଣ୍ଡଫଟା' ରଂଗ, ଆଉ ଗୋଟେ ପୁଡିଆରେ କୋଇଲା ଗୁଣ୍ଡପରି ବାଇଗଣୀ ରଂଗ ଓ ଗୋଟେ ଛୋଟ ଶିଶିରେ ସୁନେଲି

ରଂଗ। ବଡ ଭାଇନା କହୁଥିଲା ଏଇ 'ମୁଣ୍ଡଫଟା' ରଂଗର ଦୁଇଟି ଦାନା ଯଦି କାହା ମୁଣ୍ଡରେ ପକାଇଦେବ, ସିଏ ହୋରି ଖେଳିସାରି ମୁଣ୍ଡଧୋଇ ଗାଧେଇଲା ବେଳେ ମୁଣ୍ଡଫାଟି ରକ୍ତ ବୋହିଲା ପରି ନାଲିପାଣି ନିଗିଡିବ। ସେଥିପାଇଁ ତ ତା ନାଁ 'ମୁଣ୍ଡଫଟା' ରଂଗ। ରିଚା ହସି ପକେଇଲା।

ଶିଶି ଖୋଲି ଟିପେ ରଂଗ ବାଁ ହାତ ପାପୁଲିରେ ଲଗେଇ ରିଚା ଦେଖିଲା ସେ ରଂଗ ସୁନାଭଳି ଚକ୍‌ଚକ୍ କରୁଛି। ସାନ ଭାଇନା କହୁଥିଲା ସୁନାଗୁଣ୍ଡରେ ଜଡାତେଲ ମିଶାଇ ଏ ରଂଗ ତିଆରି ହୁଏ। ସେଥିପାଇଁ ତ ଏତେ ଦାମ୍। ଅଦ୍ୟ ରଂଗ ସବୁ ଅଣେ, ଦୁଇଅଣାରେ ମିଳୁଛି। କିନ୍ତୁ ସୁନେଲି ରଂଗର ଦାମ ଆଠଣା।

ରିଚା ଶିଶି ଟାଇଟ୍ କରି ବନ୍ଦ କଲା।

ସ୍କୁଲ ଗଲାବେଳେ ତାଲବୁଟ, ଚିନାବାଦାମ, ସିଝାଚଣା ଆଦି ଖାଇବା ପାଇଁ ବୋଉକୁ ଲୁଚେଇ ବାପାଙ୍କଠୁ ନେଉଥିବା ପଇସା ଜମେଇ ରିଚା ଏ ସବୁ ରଂଗ ଘରେ କାମ କରୁଥିବା ବାସୁ ଦାଦା ହାତରେ ଅଣେଇଛି।

ରିଚା ଜାଣିଛି ତା ରଂଗ କେହି ନେବେନି ଖାଲି ତା ସାନଭଉଣୀ ରିନା ଦେଖିଦେଲେ ସବୁଥିରୁ ମତେ ଅଧେ ଅଧେ ଦେ କହିବ, ଆଉ ରିଚା ନ ଦେଲେ ସିଏ ସିଧା ବୋଉ ପାଖକୁ ଯାଇ ଏମିତି କାନ୍ଦିବ ଯେ ବୋଉ କିଛି ନ ବୁଝି ନ ଶୁଝି ଆସି ରିଚାକୁ ଧମକାଇ ତାକୁ ଅଧେ ଦେ ବୋଲି କହିବ। ବଡନାନୀର ଏ ବର୍ଷ ମାଟ୍ରିକ ପରୀକ୍ଷା, ସାନନାନୀର ସପ୍ତମ ଶ୍ରେଣୀ ବୋର୍ଡ ପରୀକ୍ଷା ସେମାନେ ହୋରି ଖେଳିବେନି। ଭାଇନା ଦୁଇଜଣ ସ୍କୁଲ ସାଙ୍ଗମାନଙ୍କ ସାଙ୍ଗେ ଖେଳିବେ ବାହାରେ ଯାଇ।

କେବଳ ରିନା ପାଇଁ ରିଚା ଏ ରଂଗସବୁ ଏଠି ଲୁଚେଇକି ରଖିଛି।

ରଂଗସବୁ ଠୁଙ୍ଗାରେ ଭରିଦେଇ ବହିଥାକର କୋଣରେ ଲୁଚାଇ ଆଲମାରି ବନ୍ଦକରି ଚୌକି ଉପରୁ ଡେଇଁପଡି ଚୌକିଟିକୁ ଟାଣି ତା ଜାଗାରେ ରଖି ଝରକା ପାଖକୁ ଆସି ବାହାରକୁ ଚାହିଁ ଦେଖିଲା ରାସ୍ତାରେ ଗୋଟେ ବି ଲୋକ ନାହିଁ।

ରିଚା ଅଗଣାକୁ ଆସି ବାରଣ୍ଡା ଦାଢ଼ରେ ବସି ଦାନ୍ତ ଘଷୁଥିବା ବାପାଙ୍କୁ ପଚାରିଲା - ବାପା, ଆଜି ହୋରି ନା ?

ଦାନ୍ତଘଷା ବନ୍ଦ କରି ବାପା କହିଲେ - ହଁ, ତୁ ଯା ଦାନ୍ତ ଘଷିଦେ।

ରିଚା ଦାନ୍ତକାଠି ରହୁଥିବା ଟିଣଡବା ପାଖକୁ ଯାଇ ଦେଖି କହିଲା - ବାପା, ଗୋଟେ ବି ସରୁ ଦାନ୍ତକାଠି ନାହିଁ। ମୁଁ କେମିତି ଦାନ୍ତ ଘଷିବି ?

ବାପା କହିଲେ ଶିଳ ଉପରେ ମୁଁ ତୋ ପାଇଁ ଦାନ୍ତକାଠି ଛେଚିକି ରଖିଦେଇଛି।

ରିଚା ଦାନ୍ତ କାଠିଟା ହାତରେ ନେଇ ଦେଖିଲା ବାପା ଦାନ୍ତକାଠିର ପଛଟା ବି ଟିକେ ଚିରି ଦେଇଛନ୍ତି ଜିଭ ସଫା କରିବାପାଇଁ।

ରିଚା ଦାନ୍ତକାଠିରେ ପେଷ୍ଟ ଲଗାଇ ଶିଘ୍ର ଶିଘ୍ର ଦାନ୍ତ ଘଷିସାରି ମୁହଁ ଧୋଇ, ପିନ୍ଧିଥିବା ଫ୍ରକକୁ ଉଠାଇ ମୁହଁପୋଛି ଶିଡିଘରୁ ପିତ୍ତଳ ପିଚକାରିଟା ନେଇ ଅଗଣାକୁ ଓହ୍ଲାଇ ପାଣି ବାଲ୍‌ଟିରେ ପିଚକାରିର ମୁହଁ ବୁଡାଇ ପାଣି ଟାଣିସାରି ତା ମୁହଁକୁ ଉପରକୁ କରି ପିଷ୍ଟନକୁ ଆଗକୁ ଠେଲିଲା ମାତ୍ରେ ଫୁଆର ଭଳି ପାଣି ଅଗଣା ସାରା ପଡିଲା। ପିଚକାରି ଠିକ୍ ହେଇଯାଇଥିବା ଦେଖି ରିଚା ଖୁବ୍ ଖୁସି ହେଇଗଲା।

ଗତକାଲି ଦୁଇ ପହରରେ ବୋଉ ଭାତ ଖାଉଥିବା ସମୟରେ ରିଚା ଯେତେବେଳେ ବୋଉକୁ ପଚାରିଥିଲା - ମୋ ପାଇଁ ପିଚକାରି କିଣା ହେବନି ?

- କାହିଁକି ସେ ପିତ୍ତଳ ପିଚକାରିଟା କ'ଣ ହେଲାକି ? କଡା ସ୍ୱରରେ ବୋଉ କହିଥିଲା।

- ସେଇଟା ତ କଣା ହେଇଯାଇଛି ଯେ ସବୁ ପାଣି ବୋହିଯାଉଛି। ରିଚା କାନ୍ଦୁରା ମୁହଁ କରି କହିଥିଲା।

- ସେଇଟା ବାସୁକୁ ଦେଲେ ଝଳେଇକି ଆଣିଦେବ।

ସନ୍ଧ୍ୟାରେ ବାସୁଦାଦା ଝଳେଇକି ଆଣିଲା ପରେ ରିଚା ବାସୁ ଦାଦା ହାତରୁ ପିଚକାରି ନେଇ ପାଣି ବାଲଟିରେ ବୁଡାଇ ପାଣିଟାଣିବାକୁ ଚେଷ୍ଟା କରି ଦେଖିଥିଲା ପାଣି ଟାଣିପାରୁନି।

ଦୁଇନାନୀଙ୍କ ସାଙ୍ଗେ ପଲଙ୍କରେ ବସି ରେଡିଓରୁ 'ସଜଫୁଲ' ଶୁଣୁଥିଲାବେଳେ ରିଚା ଆସି ପିଚକାରି କଥା କହି ଉଚ୍ଚସ୍ୱରରେ କାନ୍ଦିଥିଲା।

ସାନ ଭାଇନା ରିଚାର କାନ୍ଦଣା ଶୁଣି ପଢ଼ାଘରୁ ଉଠିଆସି ରିଚା ହାତରୁ ପିଚକାରି ନେଇ ପରୀକ୍ଷା କରି କହିଥିଲେ - ଓହୋ ଯା'ର ପିଷ୍ଟନଟା ଢ଼ିଲା ହେଇଯାଇଛି। ମୁଁ ପଛପଟୁ ଖୋଲି ପିଷ୍ଟନ ଅଗରେ କନା ଗୁଡେଇ ଦେବି ଯେ ଠିକ ହେଇଯିବ।

ଏବେ କରିଦେବୁ ? ରିଚା କାନ୍ଦ ବନ୍ଦ କରି ପଚାରିଥିଲା।

- ମୁଁ ରାତିରେ କରିଦେବି। ତୁ ଯା' ଖାଇକି ଶୋଇପଡ।

ଚିନ୍ତା କରି କରି ରାତିରେ ରିଚା ଶୋଇଥିଲା।

ଯାହାହେଉ ଭାଇନା ପିଚକାରିଟାକୁ ପୁରା ଠିକ୍ କରିଦେଇଛନ୍ତି।

ରିଚା ପାଣି ବାଲ୍‌ଟି ପାଖେ ଠିଆ ହେଇ ବାପାଙ୍କୁ କହିଲା - ବାପା ରଙ୍ଗ ଗୋଳାଇବା ପାଇଁ ଏଇ ବଡ ପାଣି ବାଲ୍‌ଟିଟା ଟିକେ ବାହାରକୁ ନେଇଯିବ ? ମୁଁ ଟେକି ପାରୁନି।

ଦାନ୍ତଘଷି ସାରି ନାଲି ଗାମୁଛାରେ ମୁହଁ ପୋଛୁ ପୋଛୁ ବାପା କହିଲେ - ବୋଉ ଏଇଲେ ଉଠିଲେ ସେଇ ବାଲ୍‌ଟିରେ ତୁମ ଜାମାପଟା ଧୋଇବେ।

ଦାନ୍ତ ଘଷିବା ପାଇଁ ନେଇଥିବା ଛୋଟ ବାଲ୍‌ଟି ଆଡେ ହାତ ଦେଖାଇ ବାପା କହିଲେ - ତୁ ଏଇ ବାଲ୍‌ଟିରେ ରଂଗ ଗୋଳାଇଲେ ହେବନି ?

- 'ନା ବାପା ଅଣ୍ଟିବନି।' ମୁହଁ ଶୁଖାଇ ରିଟା କହିଲା। ବାପା କାନ୍ଧରେ ଗାମୁଛାଟା ପକାଇଦେଇ ବାରଣ୍ଡାରୁ ଅଗଣାକୁ ଓହ୍ଲାଇ ରିଟା ପାଖକୁ ଆସି ପଚାରିଲେ - ଦେଖିଲୁ ଏ ମଝିଆଁ ବାଲ୍‌ଟି ଚଳିବ ?

'ହଉ ତାହେଲେ ରିଟା କହିଲା ପରେ ବାପା ଗାମୁଛାକୁ ଅଗଣା ତାରରେ ଝୁଲେଇ ମଝିଆଁ ବାଲ୍‌ଟିରେ ପାଇପ୍‌ରୁ ପାଣି ଭରି ବାହାରକୁ ନେବା ସମୟରେ ରିଟା ବାପାଙ୍କ ସାଙ୍ଗେ ଯାଉ ଯାଉ ପଚାରିଲା - ବାପା ତମେ ଆଜି ହୋରି ଖେଳିବନି ?

- ନାଇଁଲୋ ମା।

- ତମକୁ ଭଲ ଲାଗେନି ?

- ଭଲ ଲାଗେ ଯେ ମୋର ଅନେକ ପଢ଼ାପଢ଼ି ଅଛି। ରିଟା ଭାବିଲା ବାପା କେମିତି ଖେଳୁନାହାନ୍ତି କେଜାଣି ? କଲେଜରେ ପାଠ ପଢ଼ାଇ କେତେ ଟଙ୍କା ରୋଜଗାର କରୁଛନ୍ତି, ଇଚ୍ଛା କଲେ କେତେ ପ୍ରକାରର ରଙ୍ଗ କିଣିପାରନ୍ତେ।

ରିଟା ମନେ ମନେ ଠିକ୍ କଲା ସିଏ ଯେତେବେଳେ ବାପାଙ୍କ ପରି ହେଇଯିବ ସେତେବେଳେ ବହୁତ ରଙ୍ଗ କିଣି ଦିନସାରା ହୋରି ଖେଳିବ।

ବାପା ଅଗଣା, ପାଣି ବାଲ୍‌ଟି, ବୈଠକ ଘର ପାର କରି ବାହାର ବାରଣ୍ଡାରେ ରଖିବା ପରେ ରିଟା ବାଇଗଣୀ ରଂଗ ଆଣି ପାଣିରେ ଗୋଳାଇ ପିଚକାରିରେ ଭରିବାବେଳେ ମନେ ପଡିଲା ସିଏ ଫ୍ରକ ବଦଳାଇନି।

ଅଗଣା ଆଡେ ମୁହାଁଇଥିବା ବାପାଙ୍କୁ - "ମୋ ରଂଗ ବାଲ୍‌ଟି, ପିଚକାରି ଟିକେ ଜଗିଥାଅ" କହି ଦୌଡିଯାଇ ଶୋଇଥିବା ସାନନାନୀଙ୍କୁ ପଚାରିଲା - ମୋ ଜାମା କେଉଁଠି ରଖିଛୁ ?

ଆଲେଣା ଆଡେ ହାତ ଦେଖାଇ ନାନୀ ପୁଣି ଶୋଇଗଲା।

ନାନୀ ଖଟ ପାଖରେ ଥିବା ଆଲେଣାରୁ ଜାମାଟା ଟାଣିଆଣି ରିଟା ଦୁଇ ହାତରେ ଧରି ଦେଖିଲା। ଫ୍ରକଟା ଲମ୍ବା ହେଇଯାଇଛି ପୁଣି ଚିରା ବି ଦିଶୁନି !

ପିନ୍ଧିଥିବା ଫ୍ରକକୁ କାଢ଼ି ଗୋଡରେ ଆଲେଣା ତଳକୁ ଛାଟିଦେଇ ପୁରୁଣା ଜାମାଟି ପିନ୍ଧି, ଅଲରା ଚୁଟିକୁ ହାତରେ ସାଉଁଳି ବାହାରକୁ ଆସି ବାପାଙ୍କୁ କହିଲା - ବାପା, ମୋର

ପଛକୁ ହାତ ଯାଉନି ତୁମେ ଟିକେ ମୋ ଜାମାର ବୋତାମ ଲଗେଇ ଦିଅ। ବୋତାମ ଲଗାଇସାରି ବାପା ପଚାରିଲେ - ଏ ଝିଅ, ଏଥର ମୁଁ ଯିବି ?

'ହଁ ଯାଅ' କହି ରିଟା ଫାଟକ ପାଖକୁ ଆସି ତା ଉପରେ ଚଢ଼ି ହୁକ୍ ଖୋଲି ରାସ୍ତାକୁ ଯାଇ ଦେଖିଲା ମଇଳା ଧୋତି, ଗଂଜି ପିନ୍ଧା ଲୋକଟିଏ ହାତରେ ଥଳି ଧରି ଦୂରରୁ ଆସୁଛି।

ରିଟା ଖୁସି ହେଇ ରଂଗ ବାଲ୍‌ଟି ପାଖକୁ ଆସି ଭରା ପିଚକାରି ଧରି ଆଢୁଆଳରେ ତା ଅପେକ୍ଷାରେ ରହିଲା।

ଲୋକଟି ଫାଟକ ପାର କରି ଆଗକୁ ବଢ଼ିଲା ପରେ ରିଟା ପଛପଟୁ ରଂଗ ପକାଇଲା ମାତ୍ରେ ଲୋକଟି ଚମକି ବୁଲିପଡି କ୍ରୋଧିତ ହେଇ - "ହେ ପିଲା ରଂଗ କାହିଁକି ପକାଇଲୁ" କହି ରିଟାକୁ ଗୋଡାଇଲା।

ରିଟା ଆତଙ୍କିତ ହେଇ ବାପା, ବାପା ଚିତ୍କାର କରି ଦୌଡ଼ି ଦୌଡ଼ି ବୈଠକ ଘରେ ପଶିଯାଇ କବାଟ ବନ୍ଦ କରି ହାତରେ ଚାପି ଧରିଲା।

କିଛି ସମୟ ପରେ କବାଟ ସାମାନ୍ୟ ଖୋଲି ଫାଙ୍କରୁ ଅନେଇ ଜାଣିଲା ଲୋକଟି ଚାଲିଯାଇଛି। ରିଟା ଆଶ୍ୱସ୍ତ ହେଇ ଧୀରେ ଧୀରେ ପାଦ ପକାଇ ବାହାରକୁ ଆସି ଦେଖିଲା ସଡକ କଡରେ ଗାଇଟିଏ ଚରୁଛି। ରିଟା ପିଚକାରି ମାରି ତା ପେଟରେ 'ଠ' ଲେଖି ଖିଲି ଖିଲି ହସିଲା ଓ ଆଶ୍ଚର୍ଯ୍ୟ ହେଲା ଗାଇଟି ତାକୁ ଶିଙ୍ଗରେ ଭୁସିବାକୁ ନ ଆସି ଘାସ ଖାଇବାରେ ମନ ଦେଇଥିଲା।

ଗାଇକୁ ରଂଗ ମାରି ସାରିବା ପରେ ରିଟାର ମନଟା ଅବସାଦରେ ଭରିଗଲା। ସିଏ କ'ଣ ତାର ସବୁ ରଂଗ ଗାଇ ଓ ଛେଳିଙ୍କ ଉପରେ ପକାଇ ସାରିବ ?

ଦୂରରୁ ସାଇକେଲରେ ଲୋକଟିଏ ଆସିବାର ଦେଖି ରିଟା ପିଚକାରିରେ ରଙ୍ଗ ଭରି ଫାଟକ ପାଖ ନାଗୁଆରି ବାଡପାଖେ ଲୁଚି ତାକୁ ଅନିଶା କଲା। ଲୋକଟି ଫାଟକ ପାର ହେଲା ମାତ୍ରେ ରିଟା ସାହାସ କରି ପଛପଟୁ ରଙ୍ଗ ପକାଇଲା। ଲୋକଟି କିଛି ନ କହି ଜୋର ଜୋରରେ ପେଡାଲ ମାରି ଆଗକୁ ବେଗରେ ବଢ଼ିଲା ଏବଂ ରିଟା ମନଖୋଲା ହସ ହସି ଖଣ୍ଡ ବାଟଯାଏ ତା ପଛରେ ଧାଇଁ ରଙ୍ଗ ପକାଇ ତା ପିଠିକୁ ପୁରା ଓଦା କରିଦେଇ କୃତିତ୍ୱର ସହ ଫେରି ସିଦ୍ଧାନ୍ତ ନେଲା ଏଥର କେବଳ ସାଇକେଲ ବାଲାଙ୍କ ଉପରେ ରଙ୍ଗ ପକାଇବ।

ଧୀରେ ଧୀରେ ସଡକରେ ଲୋକଙ୍କ ଯାତାୟାତ ବଢ଼ିଲା ଏବଂ ରିଟା ବାଛି ବାଛି କେବଳ ସାଇକେଲ ବାଲାଙ୍କ ଉପରେ ରଙ୍ଗ ପକାଇଲା।

ଖରା ଭଲକି ପଡିଲା ପରେ ବୋଉ ରିନାକୁ ସାଙ୍ଗରେ ଆଣି ରିଟାକୁ କହିଲା -

ଇଏ ମତେ ରୋଷେଇ କରେଇ ଦେଉନି ନେ ତାକୁ ଟିକେ ସାଥିରେ ଖେଳା।

ରିଚା ଚିଡ଼ିଯାଇ ପ୍ରଶ୍ନ କଲା - ସିଏ କେଉଁଥିରେ ଖେଳିବ ? ତା' ରଂଗ କାଇଁ ? ଏ ସବୁ ତ ମୋ ରଂଗ।

- ତୋ ରଂଗ, ମୋ ରଂଗ କ'ଣ ? ସବୁ ତ ବାପାଙ୍କ ପଇସାରୁ କିଣା ହେଇଛି। ସେଇ ରଂଗରେ ଦୁହେଁ ଖେଳିବ କହି ବୋଉ ଫେରିଗଲା।

ରିଚା ଗୁମ୍ ମାରି କିଛିକ୍ଷଣ ରହିବା ପରେ ସାନଭଉଣୀ ସାମନାରେ ଠିଆ ହେଇ କହିଲା - ବୋଉ ସେମିତି କହିଲେ କ'ଣ ହେଲା - ଯା' ବାସୁଦାଦାକୁ ପଚାର ମୁଁ ପଇସା ଜମେଇ ଏ ରଂଗ କିଣିଛି। ସେଥିପାଇଁ ମୁଁ ଦୁଇଥର ପିଚକାରି ମାରିଲେ ତୁ ଯଦି ଥରେ ମାରିବୁ ତାହେଲେ ମୁଁ ତତେ ଖେଳାଇବି।

ଢ଼ଳ ଢ଼ଳ ଆଖିରେ ଚାହିଁ ଡଉଲ ଡାଉଲ ରିନା 'ହଉ' କହିଲା।

ମୀମାଂସା ହେଲାପରେ ପ୍ରଥମେ ଦୁଇ ସାଇକେଲ ବାଲାଙ୍କୁ ରଂଗ ମାରିସାରିଲା ପରେ ରିଚା ଭରା ପିଚକାରି ରିନା ହାତକୁ ଧରାଇ ରାସ୍ତାରେ ଯାଉଥିବା ସାଇକେଲ ଆରୋହୀକୁ ମାର୍, ରଙ୍ଗ ମାର୍ କହିଲା ପରେ ବି ରିନା ପିଚକାରୀର ପିଷ୍ଟନକୁ ଜମାରୁ ଆଗକୁ ଠେଲିପାରିଲାନି। ସାଇକେଲା ବାଲା ଦୂରରୁ ଆହୁରି ଦୂରକୁ ଚାଲିଯାଉଥିବା ଦେଖି ରିଚା ତା ହାତରୁ ପିଚକାରି ଛଡେଇ ନେଇ ଦୌଡ଼ିଯାଇ ରଂଗ ମାରିଲାବେଳେ ରିନା "ମୋ ପାଳି, ମୋ ପାଳି" କହି ରିଚା ପଛରେ ଗୋଡେଇ କାନ୍ଦିବାରେ ଲାଗିଲା।

ତା କାନ୍ଦ ଶୁଣି ବୋଉ ଆସିଥିବା ଭୟରେ ତା ପାଟିରେ ହାତ ରଖି ରିଚା କହିଲା - ତୁ ତ ମାରିପାରୁନୁ ମୁଁ କ'ଣ କରିବି ?

ରିଚାର ହାତକୁ ନିଜ ମୁହଁରୁ ହଟେଇ ରିନା କହିଲା - ମୁଁ ପିଚକାରୀ ଧରିବି।

- ଠିକ୍ ଅଛି ତୁ ଖାଲି ଧରିବୁ। ଆଉ ମୁଁ ପିଷ୍ଟନ ଚିପି ମାରିବି। ରାଜି ତ ?

ରିନା କାନ୍ଦ ବନ୍ଦ କରି ମୁଣ୍ଡ ଟୁଙ୍ଗାରିଲା ଏବଂ ଦୁହେଁ ଖୁସି ହେଇ ଖେଳିବାରେ ଲାଗିଲେ। ଖରା ଟାଣ ହେଲାବେଳକୁ ସାଇର ପୁରୁଷଲୋକମାନେ ହତା ଭିତରେ ପଶିଲେ ଏବଂ ଦୁଇ ଭଉଣୀଙ୍କ ଆଡେ ନଜର ନ ଦେଇ "କୁଂଜବାବୁ ବାହାରକୁ ଆସନ୍ତୁ" କହି ବାପାଙ୍କୁ ଡାକିଲେ।

ରିଚା ଓ ରିନା ଖେଳ ବନ୍ଦକରି ସେମାନଙ୍କ ଆଡକୁ ଚାହିଁଲେ।

ବାପା ଘରୁ ବାହାରିବାକ୍ଷଣି ଜଣକ ପରେ ଜଣେ ବାପାଙ୍କ ମୁହଁ ଓ ଦେହରେ ରଙ୍ଗ ବୋଳିଲେ। ତା ପରେ ବାପା ହାତରେ ଧରିଥିବା ଠୁଙ୍ଗାରୁ ଗୋଲାପି ଫଗୁ କାଢ଼ି ସମସ୍ତଙ୍କ କପାଳରେ ଟିପେ ଟିପେ ରଙ୍ଗ ମାରିବାବେଳେ ବାସୁଦାଦା ଥାଳି ଭର୍ତ୍ତି ଘର ତିଆରି ନଡିଆ

କୋରା ଆଣିଲା । ସେମାନେ ବାସୁଦାଦାକୁ ରଂଗ ବୋଳି ନଡିଆକୋରା ଖାଇସାରି ଗଲାବେଳେ ବାପାଙ୍କୁ ଡାକିଲାରୁ ବାପା କାମ ଅଛି ଯାଇପାରୁନି କହି କ୍ଷମା ମାଗିଲେ ।

ସେମାନେ ଚାଲିଗଲା ପରେ ଦୁଇ ଭଉଣୀ ପୁଣି ଖେଳରେ ମନ ଦେଲେ ।

କିଛି ସମୟ ପରେ ଅଳ୍ପ ଅଳ୍ପ ଚିହ୍ନି ହେଉଥିବା ସାଇର ଦଳେ ସ୍ତ୍ରୀ ଲୋକ ଆସି "ହଇହେ କାନନ ବୋଉ କୁଆଡେ ଗଲ ?" କହି ଦୁଆର ମୁହଁରେ ଡାକିଲେ ଏବଂ ବୋଉ ଆସିଲା ମାତ୍ରେ ସେମାନେ ବୋଉକୁ ବେଢ଼ିଯାଇ ବୋଉର କପାଳ, ଗାଲ ଓ ବେକରେ ରଂଗ ବୋଳିଲେ । ସେମାନେ ଥକ୍କା ହେଇଗଲା ପରେ ବୋଉ ମଧ୍ୟ ହସି ହସି ସେମାନଙ୍କୁ ରଂଗ ବୋଳିଲା ।

ଦୁଇ ଭଉଣୀ କୌତୁହଳ ହେଇ ସେମାନଙ୍କୁ ଚାହିଁ ରହିଲେ ।

ରଂଗ ବୋଳାବୋଳି ସରିଲା ପରେ ଦୁଇ ନାନୀ ନଡିଆକୋରା ଓ ପାଣି ଗ୍ଲାସ ଧରି ଆସିଲେ । ଦୁଇନାନୀଙ୍କ ସଫା ମୁହଁ ଦେଖି ରହିନପାରି ରଙ୍ଗବୋଳି ନଡିଆକୋରା ଖାଇ ସେମାନେ ଫେରିଗଲେ । ବୋଉ କାମ ଅଛି କହି ସେମାନଙ୍କ ସାଙ୍ଗେ ଗଲାନି ।

ସକାଳୁ କିଛି ଖାଇନଥିବାରୁ ରିଚାର କୋରା ଖାଇବାକୁ ଇଚ୍ଛା ହେଲା । ସିଏ ରିନାକୁ ବାଲ୍‌ଟି ଜଗେଇ ଘର ଭିତରକୁ ଆସି କୋରା ଖାଉ ଖାଉ ଦେଖିଲା ବାପା, ବୋଉ ଦୁଇନାନୀ ବାସୁଦାଦା ସମସ୍ତଙ୍କ ମୁହଁ ହୋରିର ରଂଗରେ ରଙ୍ଗୀନ ଦିଶୁଛି । ଏଇ ସମୟରେ ଦୁଇ ଭାଇନା ଘରକୁ ପଶିଲେ । ସେମାନଙ୍କ ସୁନେଲୀ, ରୂପେଲୀ ରଙ୍ଗବୋଳା ମୁହଁ ଦେଖି ରିଚା ଖୁବ ଆମୋଦିତ ହେଲା । ସମସ୍ତଙ୍କୁ ଦେଖିସାରି ନିଜ ମୁହଁ ଦେଖିବା ପାଇଁ ରିଚା କୋରା ଖାଇସାରି ଶୋଇବା ଘରକୁ ଯାଇ ଖଟରେ ଚଢ଼ି ମୁହଁରେ ପଡିଥିବା ଚୁଟିକୁ କାନ ପଛକୁ ହଟେଇ ଦେଇ ଦୂର କାନ୍ଥରେ ଟଙ୍ଗା ହେଇଥିବା ଦର୍ପଣ ଆଡେ ଚାହିଁ ଦେଖିଲା ତା ମୁହଁରେ ଟିକେ ବି ରଂଗ ଲାଗିନି ।

ଦୁଃଖରେ ଖଟରୁ ଓହ୍ଲାଇ ବାହାରକୁ ଯାଇ ରିନାକୁ କହିଲା - ଯା ନଡିଆ କୋରା ଖାଇକି ଆସିବୁ ନ ହେଲେ ସରିଯିବ, ଆଉ ଅଳ୍ପ କୋରା ଅଛି ।

ରିନା ଚାଲିଗଲା ପରେ ରିଚା ବୈଠକ ଘର କବାଟ କଣରେ ଲୁଚାଇ ରଖିଥିବା ସୁନେଲୀ ରଙ୍ଗର ଶିଶି ଆଣି ଖୋଲି ଦୁଇ ପାପୁଲିରେ ରଙ୍ଗ ଲଗେଇ ସତର୍କତା ସହ ଚାରିଆଡକୁ ଚାହିଁ କେହି ନଥିବା ଦେଖି ନିଜ କପାଳ ଓ ଗାଲରେ ରଙ୍ଗ ବୋଳି ସାରି ହାତକୁ ପିନ୍ଧା ଫ୍ରକ୍‌ର ଘେରରେ ପୋଛି ଦେଇ ଆସି ରଙ୍ଗ ବାଲ୍‌ଟି ପାଖେ ଠିଆ ହେଲା ।

ରିନା କୋରା ଖାଇ ଖାଇ ଆସି ରିଚାର ମୁହଁକୁ ଦେଖି ପଚାରିଲା - ରିଚାନୀ, ତତେ କିଏ ରଙ୍ଗ ଲଗେଇଲା ?

ଫାଟକ ଆଡେ ଚାହିଁ ରିଚା କହିଲା - ମୋ ସାଙ୍ଗ, ଏବେ ଆସିଥିଲା ।

କଲିଂବେଲ୍‌ର ଧ୍ୱନିରେ ରିଚା ମିଶ୍ର ଚମ୍‌କିପଡ଼ି ପଚାଶବର୍ଷ ତଳର ଅତୀତରୁ ଫେରିଆସିଲେ ।

ଥଣ୍ଡା ହେଇଯାଇଥିବା କଫିକୁ ଡାଇନିଂ ଟେବୁଲ ଉପରେ ଛାଡି ବାରଣ୍ଡାର କାଚ କବାଟ ଖୋଲି ଦେଖିଲେ ଅଚିହ୍ନା ତରୁଣୀଙ୍କ ସହିତ ଜଣେ ବୟସ୍କା ଭଦ୍ରମହିଳା ଗେଟ୍ ଖୋଲି ଭିତରକୁ ପଶୁଛନ୍ତି ।

ରିଚା କିଛି ପଚାରିବା ପୂର୍ବରୁ ମହିଳା ଜଣକ ଛୋଟ ପିଲାପରି ଦୌଡିଆସି ରିଚାଙ୍କୁ ଆଲିଙ୍ଗନ କରି କହିଲେ - କ'ଣ ଚିହ୍ନିପାରୁନୁ ରିଚା ? ମୁଁ ବିନି ।

ନିଜକୁ ବାହୁ ବନ୍ଧନରୁ ମୁକ୍ତ କରି ରିଚା ଚାହିଁ ଦେଖିଲେ - କଲେଜରେ ତାଙ୍କ ରୁମ୍‌ମେଟ୍ ଥିବା ବିନି ବେଶ୍ ପୃଥୁଳା ହେଇଯାଇଛି । ଆଶ୍ଚର୍ଯ୍ୟ ତଥା ଆନନ୍ଦିତ ହେଇ ରିଚା କହିଲେ - ହେ ଭଗବାନ ତୁ ? ଏଠି ?

ମୋ ଝିଆରୀ ଘରକୁ ଆସିଥିଲି ଶୁଣିଲି ତୁ ଏଇଠି ଅଛୁ । ତୋ ସାଙ୍ଗରେ ରଙ୍ଗ ଖେଳିବାର ଲୋଭକୁ ସମ୍ଭାଳି ନପାରି ଝିଆରୀ ସ୍କୁଟି ପଛରେ ବସି ଚାଲିଆସିଲି । ତୋର ମନେ ଅଛି - ହଷ୍ଟେଲରେ ହୋଲିଦିନ ତୋ ଉପରେ ବାଲ୍‌ଟି, ବାଲ୍‌ଟି ରଙ୍ଗ ପକାଇ ତତେ କେମିତି ବୁଡୁବୁଡୁ କରି ଦେଉଥିଲି ?

- ମନେଅଛି । ସବୁ ମନେ ଅଛି । ଏବେ ମୁଁ ବସି ବସି ସେଇକଥା ଭାବୁଥିଲି ।

ବିନି ତା ଝିଆରୀ ହାତରୁ ତିନିଟା ରକେଟ୍ ଯୋଖି ହୋଇ ଖେଳଣା ଭଳି ଦିଶୁଥିବା ପିଚକାରି ନେଲା ।

- ଆରେ ଏ ଅଦ୍‌ଭୁତ ପିଚକାରି ତତେ କୋଉଠୁ ମିଳିଲା ? ରିଚା ଜିଜ୍ଞାସା କଲେ ।

- ଇଏ ପରା ମୋର ନାତିର ଚାଇନିଜ ପିଚକାରି ମୁଁ ତା'ଠୁ କିଛି ସମୟ ପାଇଁ ମାଗିକି ଆଣିଛି କହି ବିନି ଟ୍ରିଗର ଚିପିବା ମାତ୍ରେ ହଳଦୀ, ନାଲି ଓ ସବୁଜ ରଙ୍ଗ ଛିଟ୍‌କି ଆସି ରିଚାଙ୍କ ଶାଢ଼ୀ ଓ ଶରୀରକୁ ଭେଦି ମନକୁ ରଙ୍ଗେଇ ଦେଲା ।

ରିଚା ପ୍ରାଣଖୋଲା ହସ ହସି କାଚ ଗିନାରୁ ଅବିର ନେଇ ବିନିର ମୁହଁ, ବେକ ଓ ହାତରେ ବୋଳିବାରେ ଲାଗିଲେ ଏବଂ ସେଇ ମୁହୂର୍ତ୍ତରେ ଅନୁଭବ କଲେ ବୟସ ଶରୀରକୁ ସ୍ପର୍ଶ କରେ ମନକୁ ନୁହେଁ !

ଗୀତା ତ୍ରିପାଠୀ ପେଶାରେ ଡାକ୍ତର, କିନ୍ତୁ ରଚି ରଖନ୍ତି ସାହିତ୍ୟରେ। ପ୍ରଗାଢ଼ ଅନୁଭୂତି, ନିବିଡ଼ ସ୍ନେହ ପ୍ରବଣତା ଓ ଗଭୀର ଚିନ୍ତନ ବଳରେ ସିଏ ସୃଷ୍ଟି କରିଥାନ୍ତି ପ୍ରତ୍ୟେକଟି ଗଳ୍ପ। ତାଙ୍କ ଲେଖିବାର ଶୈଳୀ ଶକ୍ତିଶାଳୀ, ସରଳ ଓ ପ୍ରାଣବନ୍ତ।

ଡାକ୍ତର ତ୍ରିପାଠୀ ବର୍ତ୍ତମାନ ରାଉରକେଲାସ୍ଥିତ ଇସ୍ପାତ ଜେନେରାଲ୍ ହସ୍ପିଟାଲ୍‌ରେ ସିନିଅର ଡେପୁଟି ଡାଇରେକ୍ଟର ଭାବେ ଅବସ୍ଥାପିତ।



ଅର୍ପିତା
ଏଫ୍-୧୧/୨, ୟୁନିଟ୍-୯,
ଭୁବନେଶ୍ୱର-୨୨